mr Anil Kumar Panigrahy

# A BRIGHT NEW TRADITION IS BUILT
## by
## THE READERS OF

# THE HERITAGE



The span of one and half years is not a long time, yet given will and goodwill, enough of a time to build a healthy, meaningful and intelligent reading tradition.

SLOWLY BUT STEADILY THE ELITE OF INDIA AND MANY LOVERS OF INDIAN CULTURE ABROAD ARE UNITING IN THE HERITAGE





* THE HERITAGE reveals the fourth dimension of life to you—through series like "*The O[illegible] Experien*[illegible]" and "Fables and F[illegible]es for Adults".

Anil Kumar Panigrahy

* THE HERITAGE brings to you the best of creative literature of Contemporary India—stories, *novels* and poems.
* THE HERITAGE features pictorial articles on places and monuments delving into their *roots*.
* THE HERITAGE takes you to a tour of the *Little-Known India*.



THE HERITAGE

It's worth preserving. Every issue of it.



ବିଳାସିତାର ସୁଗନ୍ଧ
ସମୁଚିତ ଦାମରେ...

ପ୍ରେମ-ସତେଜତା ଆଣିବାର ସାବୁନ




ଗୋଲାପୀ ଓ ସବୁଜ ରଙ୍ଗରେ ଉପଲବ୍ଧ



ଜୟଲକ୍ଷ୍ମୀ
ଉତ୍ପାଦନ

Imageads-2107 Or.

# ଚନ୍ଦମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡି

ଏ ସଂଖ୍ୟାର ଚନ୍ଦକଥାରେ ପ୍ରାଚୀନ ନଗରୀ କାଞ୍ଚିପୁରମ୍‌ର ବିବରଣୀ ଦର୍ଶା ଯାଇଛି । ଦକ୍ଷିଣ ଭାରତର ଏହି ନଗରୀ ଅତି ପ୍ରାଚୀନ । ଥରେ ଓଡ଼ିଶାର ରାଜା କପିଳେନ୍ଦ୍ର ଦେବ କାଞ୍ଚି ରାଜାଙ୍କ କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ସେ କାହାଣୀ ବା ନଜାଣେ କିଏ !

## ଅମରବାଣୀ

ଆମରଣାଂତାଃ ପ୍ରଣୟାଃ, କୋପାସ୍ତତ୍ କ୍ଷଣଭଂଗୁରାଃ ।
ପରିତ୍ୟାଗାଶ୍ଚ ନିଃସଂଗା, ଭବନ୍ତି ହି ମହାତ୍ମନାମ୍ ॥

[ମହତ୍ ଲୋକେ ଶ୍ରଦ୍ଧାଭାବ ଜୀବନ ସାରା ପୋଷଣ କରନ୍ତି । ସେମାନଙ୍କ ଭିତରେ କ୍ରୋଧଭାବ କ୍ଷଣକରୁ ଅଧିକ ରହେ ନାହିଁ । ସେମାନେ ଯେତେବେଳେ କିଛି ତ୍ୟାଗ କରନ୍ତି, ତାହା ନିଷ୍କାମ ଭାବରେହିଁ କରନ୍ତି ।]

ବର୍ଷ : ୨୦ ନଭେମ୍ବର ୧୯୮୨ ଅଙ୍କ : ୫

ପ୍ରତି ସଂଖ୍ୟା : ଟ. ୨ ୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦









You're the school's Junior Champ and that calls for a treat!
A Fruitbits treat! In tangy Orange & Lemon flavours. It's the nicest way to share your happiness with friends.




**Friends get friendlier with Fruitbits.**

arketed by: The National

# ନଭେମ୍ବର ୩୦ ତାରିଖ ସୁଦ୍ଧା କିଣନ୍ତୁ-
# ଅଂଜଳି ମେଦୁ ବଡ଼ା ମେକର



□ ମେଦୁ ବଡ଼ା ମେକର —
ପ୍ରତିଥର ସଠିକ ଆକାରର, ସମାନ ସାଇଜର ମେଦୁ ବଡ଼ା ତିଆରି କରିଦିଏ । କିମ୍ବା ପୁଷ୍ଟିକର, କ୍ରୀମଯୁକ୍ତ ଛୋଟ ଛୋଟ ଗୋଲି-ପିଠା ତିଆରି କରନ୍ତୁ । କୁପନ ସହିତ ବିନାମୂଲ୍ୟରେ ବ୍ୟଂଜନ ପୁସ୍ତିକା ଆପଣ ପାଇପାରିବେ ।
ଅଂଜଳି ଷ୍ଟେନଲେସ ଷ୍ଟିଲ ମେଦୁ ବଡ଼ା ମେକର —
ଦାମ ଟ. ୬୩.୭୫ ପଇସା ।

## ଅଂଜଳି ଉତ୍ପାଦନଗୁଡ଼ିକ ଉପରେ ବୃହତ ଡିସକାଉଣ୍ଟ!

ଏବେ ଅଂଜଳି ମେଦୁ ବଡ଼ା ମେକର କିଣନ୍ତୁ । କାର୍ଟନର ଉପରକୁ ଚିରି ଦେଇ ତଳେ ଦିଆଯାଇଥିବା କୁପନ ସହିତ ତାହା ଆମପାଖକୁ ପଠାଇଦିଅନ୍ତୁ ।

ଆପଣଙ୍କ କୁପନ ପାଇଲା ମାତ୍ରେ ଆମେ ଆପଣଙ୍କ ପାଖକୁ ଆପଣଙ୍କ ଅଂଜଳି ସୁପର କିଚେନ କ୍ଲବ ମେମ୍ବରଶିପ କାର୍ଡ ଓ ବିନାମୂଲ୍ୟରେ ସୁବିଧାଜନକ ଅଂଜଳି ବିବରଣୀସୂଚୀ ପଠାଇଦେବୁ ।

ତାପରେ, ପ୍ରତି ଦୁଇ ମାସରେ ଥରେ ଆମେ ଆପଣଙ୍କ ପାଖକୁ ଏକ ଅଂଜଳି ଉତ୍ପାଦନ ଉପରେ ବିଶେଷ ଡିସକାଉଣ୍ଟ ପ୍ରସ୍ତାବ ପଠାଇବୁ । ଏବଂ ପ୍ରତ୍ୟେକ ଥର, ସେଥିରେ ଅନ୍ତତ: ଗୋଟିଏ ବିକଳ୍ପ ପସନ୍ଦ ରହିବ ।

### ବିନାମୂଲ୍ୟରେ ଉପହାର ମଧ୍ୟ

ଏଭଳି ଡିସକାଉଣ୍ଟ ପ୍ରସ୍ତାବମାନ ପାଇବା ପାଇଁ ଆପଣଙ୍କୁ ବର୍ଷକରେ ୪ଟି କୁପନ ବ୍ୟବହାର କରିବାକୁ ପଡ଼ିବ । ଆଉ ଆପଣ ଯଦି ଛ'ଟି ବ୍ୟବହାର କରନ୍ତି –ପ୍ରତିଥର ଏଥିରେ ଟଙ୍କା ବଂଚେଇବେ –ଆପଣ ମାଗଣାରେ ଏକ ଅଂଜଳି ବ୍ୟଂଜନ ବିଧି କପି ପାଇବେ ଓ ତା ସହିତ ଅଂଜଳି ସୁପର କିଚେନ କ୍ଲବରୁ ଏକ ମାଗଣା ଉପହାର ପାଇବେ ।

ଆପଣ ଯେଉଁ ସହାୟକ ଷ୍ଟେଷେଇ ଉପକରଣ ଚାହୁଁଛନ୍ତି ତାହା ଆପଣଙ୍କ ପାଖପଡ଼ୋଶରେ ନ ପାଇଲେ ମଧ୍ୟ ଆପଣ ଜଣେ ସଦସ୍ୟ ହୋଇପାରିବେ ।

କେବଳ ଆପଣ ଆମ ପାଖକୁ କୁପନ ପଠାଇ ଦିଅନ୍ତୁ ଓ ଆମେ ଭି ପି ପି ଦ୍ୱାରା ଅଂଜଳି ମେଦୁ ବଡ଼ା ମେକର ପଠାଇ ଦେବୁ । ଆମେ ପ୍ୟାକିଙ୍ଗ ଏବଂ ଡାକ ଖରଚ ମଧ୍ୟ ଦେବୁ ।

### ପ୍ରତି ମାସରେ ଏକ ନୂଆ ଅଂଜଳି ଉତ୍ପାଦନ

ଦଶ ବର୍ଷ ହେଲା ଅଂଜଳି ପକ୍ଷରୁ ସହାୟକ ଷ୍ଟେଷେଇ ଉପକରଣମାନ ପ୍ରସ୍ତୁତ ହୋଇ ଆସୁଛି—ଏହାର ଶ୍ରେଣୀ ଏବେ ଅନେକ ବ୍ୟାପକ ହୋଇଛି, ଗୋଟିଏ ଉତ୍ପାଦନରୁ ଆଜି ଏକ ଶହ ପଚିଶରୁ ଅଧିକ ଉତ୍ପାଦନ ପ୍ରସ୍ତୁତ କରୁଚାଲିଲାଣି । ହାରାହାରିଭାବେ ପ୍ରତି ମାସରେ ଗୋଟିଏ ନୂଆ ଅଂଜଳି ଉତ୍ପାଦନ ତିଆରି କରୁପାରୁଛି ।

**ଅଞ୍ଜଳି® ANJALI®**

୧୨୫ରୁ ଅଧିକ ସହାୟକ ଉପକରଣ,ଆପଣଙ୍କ ସବୁ ଷ୍ଟେଷେଇ କାମ ସହଜରେ ସାଧନ

**ଅଂଜଳି ସୁପର କିଚେନ କ୍ଲବ**

୨୦୨ ତ୍ରିବେଣୀ ହାଉସ, ଖେତୱାଡ଼ି ବ୍ୟାକ ରୋଡ୍, ୧୩ ଲେନ ସାମ୍ନା, ବମ୍ବେ ୪୦୦ ୦୦୪

ହଁ, ମୁଁ ଅଂଜଳି ସୁପର କିଚେନ କ୍ଲବରେ ଯୋଗଦେବାକୁ ଚାହେଁ ଓ ଅଂଜଳି ଉତ୍ପାଦନଗୁଡ଼ିକ ଉପରେ ବିଶେଷ ଡିସକାଉଣ୍ଟ ପାଇବାକୁ ଚାହେଁ ।

□ ଅଂଜଳି ମେଦୁ ବଡ଼ା ମେକର'ର କାର୍ଟନର ଉପରଅଂଶ ମୁଁ ଏଥିସହିତ ପଠାଇଲି । ଅନୁଗ୍ରହ କରି ମୋର କ୍ଲବ ମେମ୍ବରଶିପ କାର୍ଡ ଓ ଅଂଜଳି ସୁବିଧାଜନକ ବିବରଣୀସୂଚୀର ମାଗଣା କପି ମୋପାଖକୁ ପଠାନ୍ତୁ ।

□ ମୁଁ ଚାହୁଁଥିବା ଅଂଜଳି ମେଦୁ ବଡ଼ା ମେକର ମୋ ଆଖପାଖରେ ମିଳୁ ନାହିଁ । ଅନୁଗ୍ରହ କରି ସେହି ସାମଗ୍ରୀ ଓ ମୋ ମେମ୍ବରଶିପ କାର୍ଡ ଭି ପି ପି ଦ୍ୱାରା ପଠାନ୍ତୁ । ପୋଷ୍ଟମ୍ୟାନ ଏ ସବୁ ଦେଲାବେଳେ ମୁଁ ପଇସା ପରିଶୋଧ କରିଦେବି ।

□ ମୁଁ ଏବେ କ୍ଲବରେ ଯୋଗଦେବାକୁ ଚାହୁଁ ନାହିଁ, ତେବେ ଅନୁଗ୍ରହ କରି ମୋ ପାଖକୁ ବିନାମୂଲ୍ୟରେ ଅଂଜଳି ସୁବିଧାଜନକ ବିବରଣୀସୂଚୀର ଏକ କପି ପଠାନ୍ତୁ ।

ଅନୁଗ୍ରହ କରି ବଡ଼ ବଡ଼ ଅକ୍ଷରରେ ଲେଖନ୍ତୁ, ସଂଭବ ହେଲେ ଇଂରାଜିରେ ଲେଖନ୍ତୁ ।

ମୋର ନାମ ____________________

ମୋର ଠିକଣା ____________________

OR/JAN

କଣ ଚମତ୍କାର ଆଇଡିଆ, ନୁହେଁ କି ?



BYP/AKC/ORI/8608-26

# କଲ୍ୟାଣ ଋଷି

ପ୍ରାଚୀନ କାଳର କଥା । ବଣ ଭିତରେ ତପସ୍ୟାରତ କେତେଜଣ ଋଷି ଧ୍ୟାନ ବଳରେ ବୁଝି ପାରିଲେ ଯେ ସେମାନେ ସ୍ୱର୍ଗକୁ ଯିବାକୁ ହକ୍‌ଦାର । କିନ୍ତୁ କପରି ଭାବରେ ସେଠାକୁ ଯିବେ, ସେତକ ସେମାନଙ୍କୁ ଜଣା ନଥିଲା ।

ସେମାନଙ୍କ ଭିତରେ ଅନ୍ୟତମ ହେଲେ କଲ୍ୟାଣ ଋଷି । ଦିନେ ବଣରେ କଲ୍ୟାଣ ଋଷି ଜଣେ ଗନ୍ଧର୍ବଙ୍କୁ ଭେଟିଲେ ଓ ସେମାନଙ୍କ ସମସ୍ୟା ବିଷୟ କହିଲେ । ଗନ୍ଧର୍ବ ତାଙ୍କୁ ଗୋଟିଏ ମନ୍ତ୍ର ଶିଖାଇଦେଇ କହିଲେ, "ଯେଉଁମାନଙ୍କର ସ୍ୱର୍ଗକୁ ଯିବାର ଅଧିକାର ଅଛି, ସେମାନେ ଏହି ମନ୍ତ୍ରଟି ପଢ଼ିଲେ ସ୍ୱର୍ଗର ଦ୍ୱାର ଖୋଲିଯିବ ।"

କଲ୍ୟାଣ ଋଷି ନିଜ ଆଶ୍ରମକୁ ଆସି ଅନ୍ୟ ଋଷିମାନଙ୍କୁ ଡକାଇ ମନ୍ତ୍ରଟି ଶିଖାଇଦେଲେ । ଋଷିମାନେ ତାଙ୍କୁ ପଚାରିଲେ, "ତମେ ମନ୍ତ୍ରଟି କେଉଁଠାରୁ ପାଇଲ ?" କଲ୍ୟାଣ କିଛି କହିଲେ ନାହିଁ । ଋଷିମାନେ ଧରିନେଲେ କି କଠୋର ତପସ୍ୟା କରି ସେ ଏହା ପାଇଛନ୍ତି ।

ସମସ୍ତେ ଯାଇ ସ୍ୱର୍ଗର ଦ୍ୱାର ଦେଶରେ ପହଞ୍ଚି ମନ୍ତ୍ର ପଢ଼ିଲେ । ସଙ୍ଗେ ସଙ୍ଗେ ଦ୍ୱାର ଖୋଲିଗଲା । ସମସ୍ତେ ପଶିଲେ । କିନ୍ତୁ କଲ୍ୟାଣ ପଶିବା ପୂର୍ବରୁ ଦ୍ୱାର ପୁଣି ବନ୍ଦ ହୋଇଗଲା ।

ମନ୍ତ୍ରଟି ଗନ୍ଧର୍ବଠୁଁ ଶିଖିବା କଥା କଲ୍ୟାଣ ଗୋପନ ରଖିଥିଲେ । ଏହା ଗନ୍ଧର୍ବଙ୍କ ପ୍ରତି ଅକୃତଜ୍ଞତା ହେଲା । ସେହି ଯୋଗୁଁ କଲ୍ୟାଣ ସ୍ୱର୍ଗ-ପ୍ରବେଶର ଅଧିକାର ହରାଇଲେ ।





# ମଧୁମନ୍ତଙ୍କ ପସନ୍ଦ

ଅନେକ ଦିନ ତଳର କଥା । କୋଶଳ ଦେଶରେ ସେତେବେଳେ ରାଜୁତି କରୁଥିଲେ ବଲ୍ଲଭବର୍ମା । ସେ ଯେପରି ସୁଶାସକ ଥିଲେ, ସେହିପରି ବୁଦ୍ଧିମାନ ଥିଲେ । ଲୋକେ କହୁଥାନ୍ତି, "ଏମିତି ରାଜା ସହଜରେ ମିଳନ୍ତି ନାହିଁ ।"

ରାଜାଙ୍କର ଥିଲେ ଦୁଇ ପୁଅ : ସୁମନ୍ତ୍ର ଓ ପ୍ରବୀର । ରାଜା ଦୁହିଁଙ୍କୁ ସମାନ ପ୍ରକାରେ ସ୍ନେହ କରୁଥିଲେ । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ବଡ଼ ପୁଅ ହେଲେହିଁ ରାଜା ହେବ, ସେ ଦେଶରେ ସେଭଳି ପ୍ରଥା ନଥିଲା । ରାଜା ତାଙ୍କର ଯେଉଁ ପୁଅକୁ ଯୋଗ୍ୟ ବିବେଚିତ କରିବେ, ସେ ପୁଅକୁ ଯୁବରାଜ ପଦରେ ବସାଇ ପାରିବେ ।

ସୁମନ୍ତ୍ର ଓ ପ୍ରବୀର ଭିତରୁ କାହାକୁ ଯୁବରାଜ ପଦ ଦେବେ ଓ ତାହାଦ୍ୱାରା ତାଙ୍କ ଉତ୍ତରାଧିକାରୀ ରୂପେ ବରଣ କରିବେ, ରାଜା ସେକଥା ଠିକଣାଇ ପାରୁ ନ ଥିଲେ । ସୁମନ୍ତ୍ରଙ୍କୁ ସେ ଯୁବରାଜପଦ ଦେବା ସ୍ୱାଭାବିକ ହୁଅନ୍ତା, କିନ୍ତୁ ସୁମନ୍ତ୍ର ବହୁତ ମାଇଁଆ ପ୍ରକୃତିର ଯୁବକ ବୋଲି ତାଙ୍କର ଧାରଣା ହୋଇଥିଲା । ସୁମନ୍ତ୍ର ଅତି ଧୀର ଭାବରେ କଥା କହନ୍ତି, ବିଶେଷ କାହା ସହ ମିଳାମିଶା କରନ୍ତି ନାହିଁ । କେବେ କଡ଼ା ଭାବରେ କାହାକୁ କିଛି କହିବାର ବା ଧମକ ଦେବାର ଶୁଣାଯାଏ ନାହିଁ । ଯିଏ ରାଜା ହେବ, ତା'ର ବିପରୀତ ଗୁଣମାନ ରହିବା ଆବଶ୍ୟକ !

ସେସବୁ ବିପରୀତ ଗୁଣ ପ୍ରବୀରଙ୍କଠିଁ ଥିଲା । ସେ ଚଞ୍ଚଳ ସ୍ୱଭାବର ତରୁଣ । ଯେଉଁ କାମ କରିବାକୁ ସ୍ଥିର କରୁଥିଲେ, ସେ କାମ ସେ କରାଇ ନେଉଥିଲେ । ଅମାତ୍ୟକୁଳର ଯୁବକ-ମାନଙ୍କ ଭିତରେ ତାଙ୍କର ଅନେକ ବନ୍ଧୁ ଥିଲେ ।

ରମେଶ



ରାଜଗାଦି ପାଇଁ ଉତ୍ତରାଧିକାରୀ ମନୋନୟନ ସମ୍ପର୍କରେ ଆଲୋଚନା ହେବା ବେଳେ ମନ୍ତ୍ରୀମାନେ ପ୍ରାୟ ରାଜାଙ୍କୁ କହୁଥିଲେ, "ମହାରାଜ, ଯୁବରାଜ ସୁମନ୍ତ ଅତ୍ୟନ୍ତ ସାଧୁ ପ୍ରକୃତିର ଯୁବକ । ବୁଦ୍ଧିର ଗଭୀରତା ମଧ୍ୟ ଅଛି । କିନ୍ତୁ ରାଜ୍ୟଶାସନ ପାଇଁ ଯେଉଁ ସବୁ ଗୁଣର ଆବଶ୍ୟକ ସେସବୁ ମନେ ହୁଏ ପ୍ରବୀରଙ୍କଠାରେହିଁ ଅଧିକ ଅଛି । ତେଣୁ ରାଜପଦ ପାଇଁ ସେହିଁ ଯୋଗ୍ୟ ।"

ରାଜା ମଧ୍ୟ କ୍ରମେ ସେହି ସିଦ୍ଧାନ୍ତରେ ପହଞ୍ଚିଥିଲେ । ଜଣେ ରାଜପୁତ୍ର ରାଜା ହେଲେ ଅନ୍ୟ ଜଣେ କୌଣସି ଗୁରୁତର ରାଜକାର୍ଯ୍ୟ ତୁଲାଇବେ, ଏହା ଥିଲା ପରମ୍ପରା । ସେପାଇଁ ରାଜ୍ୟର ଜନସାଧାରଣଙ୍କ ଜୀବନ ଓ ସମସ୍ୟା ବିଷୟରେ ସେମାନଙ୍କର ପ୍ରତ୍ୟକ୍ଷ ଧାରଣା ହେବା ଆବଶ୍ୟକ । ରାଜା ବଲ୍ଲଭବର୍ମା ରାଜା ହେବା ପୂର୍ବରୁ ତାଙ୍କ ପିତାଙ୍କ ଆଦେଶରେ ଏକାକୀ ରାଜ୍ୟ ଭ୍ରମଣ କରିଥିଲେ । ସେ ସୁମନ୍ତ ଓ ପ୍ରବୀରଙ୍କୁ ମଧ୍ୟ ସେଇଆ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ ।

ସୁମନ୍ତ ଓ ପ୍ରବୀର କେଇମାସ କାଳ ରାଜ୍ୟ ଭ୍ରମଣ କରି ଶେଷକୁ ରାଜଧାନୀକୁ ଫେରିବାକୁ ମନସ୍ଥ କଲେ । ଗୋଟିଏ ବଣ ଭିତର ଦେଇ ଆସିଲେ ସିଧା ରାସ୍ତା ପଡ଼ିବ ବୋଲି ଦୁହେଁ ବଣରେ ପଶିଲେ । ସେ ବଣ କୋଶଳ ଓ ମଧୁପୁର ରାଜ୍ୟର ସୀମାରେ ଅବସ୍ଥିତ ।

ଦୁହେଁ ବଣ ଭିତରେ ବିଶ୍ରାମ କରୁଛନ୍ତି, ହଠାତ୍ ଗୋଟିଏ ନାରୀ କଣ୍ଠର ଆର୍ତ୍ତନାଦ ଶୁଣିଲେ । କେହି ଜଣେ କହୁଥିଲା, "ମୋତେ ବଞ୍ଚାଅ !"

ପ୍ରବୀର ତତ୍‌ପରତାର ଉଠି ପଡ଼ି ଚାରିଆଡ଼କୁ ଦୃଷ୍ଟିପାତ କଲେ ଓ ତା'ପରେ କହିଲେ, "ଭାଇ ! କେହି କୁଆଡ଼େ ନାହିଁ । ଏ କଣ୍ଠସ୍ୱର ନିଶ୍ଚୟ କୌଣସି ପିଶାଚୀର । ଚାଲ, ଆମେ ଆମ ବାଟରେ ଯିବା ।"

କିନ୍ତୁ ସୁମନ୍ତ କହିଲେ, "ଚାରିଆଡ଼କୁ ଅନାଇଲେହିଁ ସବୁ ଦେଖି ହୁଏନାହିଁ । ଏଠି କେଉଁଠି ଖାଲ ବା କୂଅ ନାହିଁ ?"

ଦେଖିବା ବେଳକୁ ଗୋଟିଏ କୂଅ ଭିତରେ ପଡ଼ିଯାଇଛି ଗୋଟିଏ ଅତ୍ୟନ୍ତ ସୁନ୍ଦରୀ କନ୍ୟା ।

ସେ ଉପରକୁ ଅନାଇ କହିଲା, "ବଣ ବୁଦା ଯୋଗୁଁ ଦେଖି ନପାରି ପଡ଼ିଗଲି ।"

ପ୍ରବୀର ତତ୍‌କ୍ଷଣାତ୍ କୂଅ ଭିତରକୁ ଡେଇଁ ପଡ଼ିବାକୁ ଉଦ୍ୟତ ହେଲେ । କିନ୍ତୁ ସୁମନ୍ତ ତାଙ୍କୁ ରୋକିଦେଲେ ଓ କହିଲେ, "ଜଣେ ତଳେ ପଡି ବାହାରି ପାରୁନାହିଁ । ତମେ ପୁଣି ପଡି ଲାଭ କ'ଣ ହେବ ? ଦୁହିଁଙ୍କୁ ମୁଁ କିପରି ବାହାର କରିବି ? ଦେଖ, କେଉଁଠି ଝାଣ ଲଟା ଥିଲେ ବାହାର କର ।"

ପ୍ରବୀର ଝାଣୁଆ ଲଟା ଖୋଜି ବାହାର କଲେ । ତା'ର ଗୋଟିଏ ପ୍ରାନ୍ତ ସୁମନ୍ତ ଧରିଲେ । ଲଟା ଧରି ଧରି ପ୍ରବୀର ଓହ୍ଲାଇଗଲେ ଓ କନ୍ୟାଟିକୁ ଉପରକୁ ଆଣିଲେ । କନ୍ୟା ପ୍ରବୀରକୁ ଧନ୍ୟବାଦ ଦେଲେ । ପ୍ରବୀରଙ୍କ ଆନନ୍ଦ କଥା କହିଲେ ନ ସରେ ।

ଉପରକୁ ଉଠି ଆସି କନ୍ୟା ନିଜର ପରିଚୟ ଦେଲେ । ସେ ମଧୁପୁର ରାଜ୍ୟର ରାଜକନ୍ୟା ମଧୁମତୀ । ସଖିମାନଙ୍କ ସହ ଲୁଚକାଳି ଖେଳୁଥିବା ଅବସ୍ଥାରେ ସେମାନଙ୍କଠୁଁ ଦୂରେଇ ଆସି କୂଅରେ ପଡ଼ିଯାଇଥିଲେ ।

ସେ ଏକଥା କହିସାରିବା ବେଳକୁ ତାଙ୍କ ସଖିମାନେ ଆସି ପହଞ୍ଚିଗଲେ । ରାଜକନ୍ୟା ସେମାନଙ୍କ ସହ ଚାଲିଗଲେ ।

ଦୁଇ ରାଜପୁତ୍ର ରାଜଧାନୀକୁ ଫେରିଲେ ଓ ସେମାନଙ୍କ ରାଜ୍ୟ ଭ୍ରମଣର ଅଭିଜ୍ଞତା ରାଜାଙ୍କୁ ଶୁଣାଇଲେ । ରାଜା ଖୁସି ହେଲେ । ଦୁଇଦିନ



ପରେ ରାଜାଙ୍କ ବୟସ୍ୟ ଆସି ରାଜାଙ୍କୁ କହିଲା, "ମଧୁପୁରର ରାଜକନ୍ୟା ମଧୁମତୀ ଅତ୍ୟନ୍ତ ସୁନ୍ଦରୀ । ମୋର ମନେ ହୁଏ ରାଜକୁମାର ସୁମନ୍ତ ଓ ରାଜକୁମାର ପ୍ରବୀର ଉଭୟେ ତାଙ୍କୁ ବିଭା ହେବାକୁ ଚାହାନ୍ତି ।"

"ସତେ ? ତେବେ ରାଜକନ୍ୟା କାହାକୁ ପସନ୍ଦ କରୁଛନ୍ତି, ସେକଥା ବୁଝିବାକୁ ହେବ ।

କୋଶଳ ଓ ମଧୁପୁର ରାଜ୍ୟ ଭିତରେ ବିଶେଷ ବନ୍ଧୁତା ଥାଏ । କୋଶଳରେ ଗୋଟିଏ ବଡ଼ ଉତ୍ସବ ହେବାର ଥାଏ । ସେହି ଉପଲକ୍ଷ୍ୟେ ରାଜା ବଲ୍ଲଭବର୍ମା ସପରିବାରେ ମଧୁପୁର ରାଜାଙ୍କୁ ନିମନ୍ତ୍ରଣ କଲେ । ରାଜା ସପରିବାରେ ଆସିବାରୁ ବଲ୍ଲଭବର୍ମା ଅତିଥି ରାଜାଙ୍କ ଅନୁମତି

ସହ କନ୍ୟା ମଧୁମତିଙ୍କୁ ପଚାରିଲେ, "ତମେ ମୋର ଦୁଇପୁଅଙ୍କ ଭିତରୁ ଜଣକୁ ବାଛି ହେବାକୁ ରାଜି ?"

ମଧୁମତି ହଁ ଭରିଲେ । ସେତେବେଳକୁ ପ୍ରବୀର ପ୍ରଚାର କରି ସାରିଥାନ୍ତି ଯେ ମଧୁମତି ତାଙ୍କୁହିଁ ବାଛି ହେବେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ମଧୁମତି ଜ୍ୟେଷ୍ଠ ରାଜପୁତ୍ରଙ୍କୁ ବାଛି ହେବେ ବୋଲି କହିଲେ ।

"ମା, ସୁମନ୍ତ ଓ ପ୍ରବୀର ଭିତରେ ତୁମେ ସୁମନ୍ତଙ୍କୁ କାହିଁକି ପସନ୍ଦ କଲ ?" ରାଜା ବଲ୍ଲଭବର୍ମା ପରେ ଏକାନ୍ତରେ ମଧୁମତିଙ୍କୁ ପଚାରିଲେ ।

"ମହାରାଜ! ସୁମନ୍ତ ଜ୍ଞାନୀ, ବୁଦ୍ଧିମାନ ଓ ବ୍ୟକ୍ତିତ୍ୱବାନ ଓ ସମ୍ଭ୍ରାନ୍ତ ।" ରାଜକନ୍ୟା କହିଲେ ।

"କିପରି ?" ରାଜା ପଚାରିଲେ ।

ରାଜକନ୍ୟା ବୁଝାଇଦେଲେ : ପ୍ରବୀର ଚାରିଆଡ଼କୁ ଦୃଷ୍ଟିପାତ କରି କାହାକୁ ନ ଦେଖି ଚାଲିଯିବାକୁ ପ୍ରସ୍ତାବ କଲାବେଳେ ଆଖପାଖରେ କୂଅ ଥିବାର ସମ୍ଭାବନା କଥା ସୁମନ୍ତ କହିଥିଲେ । ତାହା ଜ୍ଞାନର ପରିଚୟ । ପ୍ରବୀର କୂଅ ଭିତରକୁ ଡେଇଁ ପଡ଼ିବାକୁ ବସିବା ବେଳେ ସୁମନ୍ତ ତାଙ୍କୁ ରୋକି ପ୍ରଥମେ ଲହା ଯୋଗାଡ଼ କରିବାକୁ କହି ବାସ୍ତବ ବୁଦ୍ଧିର ପରିଚୟ ଦେଇଥିଲେ । ସେ ଧୀର ଭାବରେ କଥା କହୁଥିଲେ ବି ତାଙ୍କ କଥାର ପ୍ରଭାବକୁ ପ୍ରବୀର ଏଡ଼ାଇ ଦେଇ ପାରୁ ନଥିଲେ ଓ ତାଙ୍କ ନିର୍ଦ୍ଦେଶରେ କାମ କରୁଥିଲେ । ଏହା ତାଙ୍କ ବ୍ୟକ୍ତିତ୍ୱର ପରିଚୟ । ପ୍ରବୀର ରାଜକନ୍ୟା ତାଙ୍କୁ ବାଛି ହେବେ ବୋଲି ଏଣେ ତେଣେ ପ୍ରଗଳଭ ଭାବରେ କହିଥିବା ସ୍ଥଳେ ସୁମନ୍ତ ସେକଥା ନ କହି ନିଜ ସମ୍ଭ୍ରମ ବୋଧର ପରିଚୟ ଦେଇଥିଲେ ।

ରାଜକନ୍ୟା ମଧୁମତିଙ୍କ ବିଚାରରେ ରାଜା ମୁଗ୍ଧ ହେଲେ । ସେ ସୁମନ୍ତଙ୍କୁହିଁ ଯୁବରାଜ ପଦରେ ଅଭିଷିକ୍ତ କଲେ ।





# ହୁଣ୍ଡା ରାୟଙ୍କ ରାୟ

ପୁରୁଣା କାଳର କଥା । ସେତେବେଳେ ଦେଶରେ ଜମିଦାରମାନଙ୍କ ରାଜୁତି ଚାଲିଥାଏ କହିଲେ ଚଳେ । ରାଜା ଥା'ନ୍ତି । କିନ୍ତୁ ରାଜା ତ ଆଉ ଗାଁ ଗଣ୍ଡା ବୁଲି ବୁଲି ହାଲ୍‌ଚାଲ୍ ଦେଖିବେ ନାହିଁ!" ତା'ଛଡ଼ା ସେତେବେଳେ ଆଜିକାଲି ଭଳି ଏତେ କର୍ମଚାରୀ ନଥିଲେ । ତେଣୁ ଗାଁ ଗଣ୍ଡାର ଆଇନ୍ କାନୁନ୍, ନିୟମ ଶୃଙ୍ଖଳ ସବୁ ଜମିଦାରମାନଙ୍କ ଉପରେ ନ୍ୟସ୍ତ ରହିଥାଏ ।

ଖଣ୍ଡିଏ ଖଣ୍ଡିଏ ଅଞ୍ଚଳ ଉପରେ ଜଣେ ଜଣେ ବିଚାରକ ଥିଲେ । ସେ ଲୋକଙ୍କ ଅଭିଯୋଗ ଶୁଣି ରାୟ ଦେଉଥିଲେ । ସାଧାରଣତଃ ସେସବୁ ଅଞ୍ଚଳର ଜମିଦାର-ମାନେହିଁ କିଏ ବିଚାରକ ହେବ ସେକଥା ସ୍ଥିର କରି ରାଜାଙ୍କୁ ଜଣାଇ ଦେଉଥିଲେ । ରାଜା ସେଥିରେ ନିଜ ସମ୍ମତି ଦେଉଥିଲେ ।

ଥରେ ରଣ୍ଡିପୁରର ବିଚାରକ ପଦ ଖାଲି ପଡ଼ିଲା । ସେଠିକାର ଜମିଦାର ଥିଲେ ବିଜୟ ରାୟ । ସେ ଟିକିଏ ହୁଣ୍ଡାଳିଆ ଲୋକ ଥିଲେ ବୋଲି ଲୋକେ ତାଙ୍କୁ ହୁଣ୍ଡା ରାୟ ବୋଲି ଡାକୁଥିଲେ । ହୁଣ୍ଡା ରାୟଙ୍କୁ ତାଙ୍କର କେତେ-ଜଣ ଖୋସାମୋଦିଆ କହିଲେ, "ହଜୁର୍ ! ଯିଏ ନୂଆ ବିଚାରକ ହେବ, ସେ ଆପଣଙ୍କ ଭଳି ବୁଦ୍ଧିମାନ ଓ ନ୍ୟାୟଶୀଳ ହେବା ଦରକାର !"

ହୁଣ୍ଡା ରାୟ କହିଲେ, "ଓଃ ଏମିତି କଥା ? ତେବେ ଏତେ କଷ୍ଟ କରି ବିଚାରକଟିଏ ଖୋଜିବ ପୁଣି କେଉଁଠୁ ? ମୁଁ ନିଜେ ବିଚାରକ ବା ନ ହେବି କିଆଁ ?" ସେ ସେହି ଅନୁସାରେ ରାଜାଙ୍କୁ ଲେଖିଲେ । ରାଜା ହଁ ଭରିଲେ ।

ହୁଣ୍ଡା ରାୟ ସ୍ୱୟଂ ବାଜାବାଲା ସହ ବୁଲି ବୁଲି ପ୍ରଚାର କଲେ, "ପ୍ରଜାମାନେ,



ତମମାନଙ୍କର ଆଉ ଭୟ ନାହିଁ । ମୁଁ ନିଜେ ବିଚାରକ ହେଲି । ମୋ ଚୁଟିକୁ ଦେଖ । ମୁଁ ଧାର୍ମିକ ଲୋକ । ଏଣିକି ଝଗଡ଼ା ହେଲେ ମୋ ପାଖକୁ ଚାଲି ଆସିବ ମୁଁ ନ୍ୟାୟ ବିଚାର କରି ରାୟ ଦେବି ।"

ପରଦିନ ସେ ବିଚାର ପାଇଁ ବରଗଛ ମୂଳରେ ବସିଲେ । ସେତିକିବେଳେ ଖବର ପହଞ୍ଚିଲା, ସ୍ୱୟଂ ରାଜା ରାସ୍ତାରେ ବାହାରିଛନ୍ତି । ସେ ଦିବାହାର ପର୍ଯ୍ୟନ୍ତ ସେଠି ରହିବେ ଓ ହୁଣ୍ଡା ରାୟଙ୍କ ବିଚାର ଦେଖିବେ ।

ଘରେ ରାଜକୀୟ ଖିଆପିଆର ବ୍ୟବସ୍ଥା କରି ସାରି ଜମିଦାର ଗଛମୂଳକୁ ଆସି ଅପେକ୍ଷା କଲେ । ରାଜା ପହଞ୍ଚିଲେ । ଜମିଦାର ରାଜାଙ୍କୁ ଆସନରେ ବସାଇ ଠିଆ ହୋଇ ବିଚାର ଆରମ୍ଭ କଲେ ।

ବିଚାର ପ୍ରାର୍ଥୀ ରଘୁର ନାକ କାମୁଡ଼ି ଖଣ୍ଡିଆ କରିଦେଇଥାଏ ରମେଶ । ସେ କାହିଁକି ଏପରି କଲା ବୋଲି ଜମିଦାର ରମେଶକୁ ପଚାରିବା ମାତ୍ରେ ରମେଶ କହିଲା, "ହଜୁର! ମୁଁ କାହିଁକି ସେ କାମ କରିବି ? ସେ ନିଜେ ନିଜ ନାକକୁ କାମୁଡ଼ିଛି !"

ରଘୁ କହିଲା, "ଇଏ କେଡ଼େ ମିଥ୍ୟାବାଦୀ ଦେଖନ୍ତୁ । କେହି କେବେ ନିଜ ନାକ କାମୁଡ଼ି ପାରେ ? ମୁହଁ ସେଯାଏ ପାଇବ ?"

ରମେଶ ତତ୍କ୍ଷଣାତ୍ ଉତ୍ତର ଦେଲା, "ହଜୁର, ଧର୍ମାବତାର! ସେ ଚୌକି ପକାଇ ତା' ଉପରେ ଠିଆ ହୋଇ ନିଜ ନାକ କାମୁଡ଼ିଛି । ସେଥିରେ ମୁହଁ ସେଯାଏ ଯିବ ନାହିଁ କାହିଁକି ?"

ସେତେବେଳକୁ ହୁଣ୍ଡା ରାୟଙ୍କୁ ଭୀଷଣ ଅସୁବିଧା ଲାଗୁଥାଏ । କାରଣ ସ୍ୱୟଂ ରାଜା ସବୁ ଶୁଣୁଛନ୍ତି । ସେ କହିଲା, "ଠିକ୍, ଠିକ୍ ! ରଘୁ ନିଜେ ଦୋଷୀ । ତାକୁ ଚାଳିଶ ପାହାର ବେତ ମାଡ଼ ଦିଅ ।"

ଏହାପରେ ସେ ରାଜାଙ୍କୁ କହିଲେ, "ମହିମା! ମଧ୍ୟାହ୍ନ ବେଳ ହେଲାଣି । ମୋ ଘରକୁ ଚାଲନ୍ତୁ ।"

ରାଜା କିଛି ନକହି ଚାଲିଲେ । ଘରେ ପହଞ୍ଚି ଜମିଦାର ତାଙ୍କ ସ୍ତ୍ରୀଙ୍କୁ ପଚାରିଲେ,

"କ'ଣ, ମୋ ବିଚାର ଠିକ୍ ହେଲା? ଶୁଣୁଥିଲଟି?"

"ଗଧଟିଏ ଯେମିତି ବିଚାର କରିଥାନ୍ତା, ତମେ ସେମିତି କଲ। ନିଜେ ଚୌକି ଉପରେ ଠିଆ ହୋଇ ନିଜ ନାକ କାମୁଡ଼ିବାକୁ ଚେଷ୍ଟା କଲ ଦେଖିବା!" ସ୍ତ୍ରୀ କହିଲେ।

ଜମିଦାର ଯଥାସାଧ୍ୟ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ। ସେ କହିଲେ, "ବଡ଼ ଭୁଲ୍ ହୋଇଗଲା ତ!"

ଉପରଓଳା ପୁଣି ବିଚାର ଆରମ୍ଭ ହେଲା। ଜମିଦାର କହିଲେ, "ଚାଳିଶ ବେତ ମାରି ରମେଶକୁ ଦିଅ।"

ସେତେବେଳେ ଜମିଦାରଙ୍କ ସ୍ତ୍ରୀ ଆଢୁଆଳରୁ ସବୁ ଦେଖୁଥାନ୍ତି। ସେ ଚାହୁଁଥିଲେ କି ଜମିଦାର ପ୍ରଥମେ କହନ୍ତୁ କି କେହି ନିଜ ନାକ କାମୁଡ଼ି ପାରେନା। ତେଣୁ ସେ ନିଜ ନାକ ପ୍ରତି ଇଙ୍ଗିତ ଦେଲେ। ଜମିଦାର ତାହା ଲକ୍ଷ୍ୟ କରି କହିଲେ, "ନାହିଁ, ନାହିଁ, ବେତମାଡ଼ ଦରକାର ନାହିଁ। ତା' ନାକ କାଟି ଦିଅ।"

ସ୍ତ୍ରୀ ଏ ରାୟ ଶୁଣି ବିରକ୍ତିରେ ଦାନ୍ତ ଚିପି ନିଜ ଛାତିରେ ହାତ ବାଡ଼େଇ ଦେଲେ। ଜମିଦାର ତାହା ଲକ୍ଷ୍ୟ କରି ରାୟ ଦେଲେ, "ଠିକ୍, ଠିକ୍। ମୋ ସ୍ତ୍ରୀ ତାଙ୍କ ନିଜ ଦାନ୍ତରେ ଯାଇ ତା' ନାକ କାମୁଡ଼ିବେ।"

ଜମିଦାରଙ୍କ ସ୍ତ୍ରୀ ଲଜ୍ଜାରେ ପଳାଇଗଲେ। ରାଜା ଆଉ ହସ ରୋକି ପାରିଲେ ନାହିଁ। ସେ କହିଲେ, "ଜମିଦାର! ହେଲା। ତମେ ତମ ପଶାଖେଳ, ଖାଇବା ପିଇବା ଇତ୍ୟାଦିକୁ ନେଇ ରୁହ। ଏ କାମ ତମ ପାଇଁ ନୁହେଁ। ମୁଁ ଜଣେ ବିଚାରକ ପଠାଇବି।"

ତା'ପରେ ଦରବାର ଶେଷ ହେଲା। ରାଜା ଜଣେ ନୂଆ ବିଚାରକ ପଠାଇବାର ପ୍ରତିଶ୍ରୁତି ଦେଇ ରାଜଧାନୀକୁ ବାହୁଡ଼ି ଗଲେ।



# ବିଧି ନିର୍ଦ୍ଦିଷ୍ଟ

"ଆମ ଆଗର ପାଖ ଘରେ ଯିଏ ଆସି ରହିଛନ୍ତି, ସେ ଜଣେ ଭଲ ଜ୍ୟୋତିଷ । ନାମ ହରି ଶର୍ମା । ତାଙ୍କୁ ଆମ ଝିଅର ଜାତକ ଦେଖାଅ । ସେ ତା' ବିବାହ ବିଷୟରେ କିଛି କହି ପାରିବେ ।" କଳ୍ପନା ଦେବୀ ତାଙ୍କ ସ୍ୱାମୀ ରବିବାବୁଙ୍କୁ ଏକଥା ବାରମ୍ବାର କହିଲେ । ରବିବାବୁ ବି ଲକ୍ଷ୍ୟ କଲେ, ଜଣେ ଭଦ୍ରଲୋକ ସେଦିନ ସକାଳେ ଯାଇ ପଡ଼ୋଶୀ ଘରେ ଖଣ୍ଡିଏ ଜାତକ ଦେଇ ଆସିଲେ ।

ରବିବାବୁ କଳ୍ପନା ଦେବୀଙ୍କୁ ଧରି ପଡ଼ୋଶୀ ଘରେ ପହଞ୍ଚିଲେ । ଯିଏ କବାଟ ଖୋଲିଲା, ସିଏ ଗୋଟିଏ ଝିଅ । ରବିବାବୁ ହରି ଶର୍ମାଙ୍କୁ କହିଲେ, "ଆମେ ଆପଣଙ୍କ ପ୍ରତିବେଶୀ । ପରିଚୟ ପାଇଁ ଆସିଲୁଁ । ଆପଣଙ୍କ ଝିଅଟିର ଗୁଣଚାଲିଣି ଖୁବ୍ ଭଲ । ତା' ବାହାଘର ବ୍ୟବସ୍ଥା କଲେଣି ?"

"ଭାଇ, ବ୍ୟବସ୍ଥା କରିବାକୁ ମୁଁ କିଏ ? ତା' ଅଦୃଷ୍ଟରେ ଯେବେ ଯେଉଁଠି ଥିବ, ସେବେ ସେଠି ହେବ ।" ହରି ଶର୍ମା କହିଲେ ।

ରବିବାବୁ କହିଲେ, "ବେଶ୍, ବେଶ୍ । ଆମ ସହ ପରିଚୟ ହେଲା । ସୁବିଧା ଅସୁବିଧା ବେଳେ ଆମକୁ କହିବେ । ପରେ ଦେଖା ହେବ ।"

ବିଦାୟ ନେଇ ଆସି ରାସ୍ତାରେ ରବିବାବୁ କଳ୍ପନା ଦେବୀଙ୍କୁ କହିଲେ, "ଆଉ ତାଙ୍କୁ ଝିଅର ଜାତକ ଦେଖାଇବାର ଆଗ୍ରହ ଅଛି ?"

କଳ୍ପନା ଦେବୀ କିଛି କହିଲେ ନାହିଁ ।






[୪]

[ରାକ୍ଷସ ଉଗ୍ରାକ୍ଷର ଅତିଥି ଭାବରେ ଥିବା ବେଳେ ରାତିରେ ରାଜା ଚନ୍ଦ୍ରସେନ ଅଗ୍ନିଦ୍ୱୀପର ଭୟଙ୍କର ପକ୍ଷୀମାନଙ୍କ କଥା ଶୁଣି ସେମାନଙ୍କୁ ଦେଖିବାକୁ ଗଲେ । ଉଗ୍ରାକ୍ଷର ଅନୁଚରମାନଙ୍କ ସହିତ ସେ ପକ୍ଷୀମାନଙ୍କ ଉପରେ ସବାର୍ ହୋଇ ଆସିଥିବା ଲୋକଙ୍କର ଲଢ଼େଇ ହେଲା । ଉଗ୍ରାକ୍ଷ ଆହତ ହେଲା । ତା'ପରେ...]

ଉଗ୍ରାକ୍ଷ ନିଜ ସେବକର କାନ୍ଧରେ ଭରଦେଇ ଠିଆ ହେଲା । ଯନ୍ତ୍ରଣା ଯୋଗୁଁ ଥରେ ସେ ଚିତ୍କାର କଲା । କିଛି ସମୟ ଚିନ୍ତା କରି ସେ ଚନ୍ଦ୍ରସେନଙ୍କୁ କହିଲା, "ଚନ୍ଦ୍ରସେନ ! ଅବସ୍ଥା ଦେଖୁଛ ତ ? ମୁଁ ଗୋଟିଏ ଯଶସ୍ୱୀ ରାକ୍ଷସ ବଂଶର ସନ୍ତାନ । ଏ ବଣରେ ଯେଉଁଆଡେ ମନ ସେଇଆଡ଼େ ମୁଁ ଅବାଧରେ ବିଚରଣ କରୁଥିଲି । ଆଜି କୁଆଡୁ ଗୁଡ଼ିଏ ମଣିଷ ପକ୍ଷୀ ଉପରେ ସବାର୍ ହୋଇ ଆସି ମୋ ଗର୍ବ ଖର୍ବ କରିଦେଲେ । ଏହା କ'ଣ ମୋ ପକ୍ଷରେ କମ ଅପମାନର ବିଷୟ ?"

ଚନ୍ଦ୍ରସେନ କହିଲେ, "ଉଗ୍ରାକ୍ଷ ! ଚିନ୍ତା କରି ଲାଭ ନାହିଁ । ତୁମେ ଓ ମୁଁ, ଆମେ ଦୁହେଁ ପରାଜିତ ହୋଇଛୁ ! ଆମକୁ ମଣିଷମାନେ




ପରାଜିତ କରି ନାହାନ୍ତି, ଯେଉଁ ପକ୍ଷୀ ଉପରେ ସେମାନେ ସବାର୍ ହୋଇ ଆସନ୍ତି, ସେହି ପକ୍ଷୀମାନେ ପରାଜିତ କରିଛନ୍ତି । ସେସବୁ ଭୀଷଣ ପକ୍ଷୀଙ୍କୁ ସାମ୍ନା କରିବା ପାଇଁ ଯେଉଁ ଧରଣର ଅସ୍ତ୍ରଶସ୍ତ୍ର ଆବଶ୍ୟକ, ଆମ ପାଖରେ ବର୍ତ୍ତମାନ ତାହା ନାହିଁ । ତେଣୁ ସେମାନଙ୍କୁ ଦମନ କରିବା ନିମନ୍ତେ ଆମକୁ କିଛି ଭିନ୍ନ ଉପାୟ କରିବାକୁ ପଡ଼ିବ ।"

ଚନ୍ଦ୍ରସେନ ତାକୁ ସିନା ସାନ୍ତ୍ୱନା ଦେଉଥିଲେ, ବାସ୍ତବରେ ସେ ନିଜେ ମଧ୍ୟ କମ୍ ଚିନ୍ତିତ ନଥିଲେ । ଅବଶ୍ୟ ରାକ୍ଷସର ଭବିଷ୍ୟତ କଥା ସେତେ ନୁହେଁ, ନିଜ ପ୍ରଜାଙ୍କ ଭବିଷ୍ୟତ କଥା ଭାବି ସେ ସେତେ ବିଚଳିତ ବୋଧ କରୁଥିଲେ ।

ଉଗ୍ରାକ୍ଷ ପ୍ରାୟ ଭାଙ୍ଗି ପଡ଼ିଲା ଭଳି କହିଲା, "ଆମେ ସେଭଳି ଉପାୟ ଭାବି ବାହାର କରିବା ବେଳକୁ ସେ ଧୂର୍ତ୍ତ ଲୋକେ ମୋର ଏ ବଣ, ତମର ସେ ସୁନ୍ଦର ପ୍ରାସାଦ, ସବୁ ଦଖଲ କରିନେବେ । ସେମାନେ ଯେପରି ଦୁର୍ଦ୍ଦାନ୍ତ, ସେହିପରି କ୍ଷିପ୍ର । ସେକଥା ବୁଝୁଛ ତ ?"

ଏଡ଼େ ଭୟଙ୍କର ରାକ୍ଷସକୁ ଏଭଳି ଭୟଭୀତ ହେବାର ଦେଖି ଚନ୍ଦ୍ରସେନଙ୍କୁ ବଡ଼ ଅସୁବିଧା ଲାଗିଲା । ଉଗ୍ରାକ୍ଷ ପ୍ରତି ତାଙ୍କର ଦୟା ବି ଆସିଲା ।

ଚନ୍ଦ୍ରସେନ ପଚାରିଲେ, "ଉଗ୍ରାକ୍ଷ ! ଅଗ୍ନି-ଦ୍ୱୀପର ଲୋକେ ଆମ ରାଜ୍ୟ ଓ ବଣ ଦଖଲ କରିବାକୁ ଚାହାନ୍ତି, ତମର କ'ଣ ଏଇଆ ଧାରଣା ?"

"ସେଭଳି ଉଦ୍ଦେଶ୍ୟ ନଥିଲେ ସେମାନେ କାହିଁକି ଆସି ବାରମ୍ବାର ଆମ ଉପରେ ହମଲା କରିବେ ?" ଉଗ୍ରାକ୍ଷ ଚିନ୍ତାକ୍ଲିଷ୍ଟ ଭାବରେ କହିଲା ।

"କିନ୍ତୁ ଉଗ୍ରାକ୍ଷ, ସେମାନଙ୍କ ଉଦ୍ଦେଶ୍ୟ ଯଦି ସେଇଆ, ତେବେ ସେମାନେ ଜଣ ଜଣ କରି ଆମ ଲୋକଙ୍କୁ ହରଣଚାଲ କରି ନେଇ ଯାଉଛନ୍ତି କାହିଁକି ?" ଚନ୍ଦ୍ରସେନ ପଚାରିଲେ ।

"ତାହା ବାସ୍ତବିକ ରହସ୍ୟମୟ । ଯଦି କୌଣସି ମତେ ଆମେ ସେ ଲୋକଙ୍କ ଭିତରୁ ଜଣକୁ କାବୁ କରି ଅଟକାଇ ପାରନ୍ତୁ, ତେବେ ତାକୁ ଜେରା କରି ସବୁ କଥା ବାହାର କରି

ନାଥିଲୁ । ଜଣକୁ ଧରିଥିଲୁଁ; କିନ୍ତୁ ସେ ମରିଗଲା ।" ଉଗ୍ରାକ୍ଷ ମନସ୍ତାପ କରି କହିଲା ।

"ଦିନେ ନା ଦିନେ ସେ ଲୋକଙ୍କ ଭିତରୁ କେଇଜଣଙ୍କୁ ଅବଶ୍ୟ ଆମେ ଧରି ପାରିବୁଁ । ସେଦିନ ସବୁ ରହସ୍ୟ ଜଣା ପଡ଼ିବ । ସେ ଅଗ୍ନିଦ୍ୱୀପ କେଉଁଠି ? ଏ ଭୀଷଣ ପକ୍ଷୀମାନଙ୍କୁ ଯେ ଧୂର୍ତ୍ତ ଲୋକେ କିପରି ବଶକୁ ଆଣିଲେ ? ସେ ପକ୍ଷୀଙ୍କୁ ବାହନ କରି ଆମ ରାଜ୍ୟକୁ ଆସି ଲୋକଙ୍କୁ ଧରି ନେଇଯାଇ ସେମାନେ କ'ଣ ପାଉଛନ୍ତି ? ଏସବୁ କଥା ଆମେ ଜାଣିବା ଆବଶ୍ୟକ ।"




ଏହା କହି ଚନ୍ଦସେନ ଉଗ୍ରାକ୍ଷଠାରୁ ବିଦାୟ ନେବାକୁ ବସିଲେ । ସେ କହିଗଲେ, "ଉଗ୍ରାକ୍ଷ ! ତୁମର ବିଶ୍ରାମ ଲୋଡ଼ା । ନିଜ କକ୍ଷାକୁ ମଧ୍ୟ ମଜବୁତ୍ କର । ମୁଁ ବି ମୋ ପ୍ରାସାଦର ସୁରକ୍ଷା ଦିଗରେ ଦୃଷ୍ଟି ଦେବି । ଆଚ୍ଛା, ମୁଁ ଏଥର ଚାଲିଲି ।"

ଅନୁଚରମାନଙ୍କ ସହ ଚନ୍ଦସେନ ନିଜ ପ୍ରାସାଦ ଅଭିମୁଖେ ଚାଲିଲେ । ଉଗ୍ରାକ୍ଷ କିଛି ବାଟ ତାଙ୍କ ପଛେ ପଛେ ଯାଇ କହିଲା, "ଚନ୍ଦସେନ ! ମୋର ଏ ଦୟନୀୟ ଅବସ୍ଥା ବିଷୟରେ ତୁମ ଲୋକେ ଯେପରି ଅନ୍ୟମାନଙ୍କ ଆଗରେ ଆଲୋଚନା ନ କରନ୍ତି । ମୋର ସମ୍ମାନ ଯିବ ।"

ଚନ୍ଦସେନ ହସିବେ କି ଦୁଃଖ କରିବେ ବୁଝିପାରିଲେ ନାହିଁ । ସେ ମୁଣ୍ଡ ହଲାଇଲେ । ତାଙ୍କ ସେନାପତି ତାଙ୍କୁ କହିଲେ, "ମହାରାଜ ! ଅଗ୍ନିଦ୍ୱୀପର ଶତ୍ରୁମାନଙ୍କର ମୁକାବିଲା ସକାଶେ ଆମକୁ ରାକ୍ଷସମାନଙ୍କର ପ୍ରତ୍ୟକ୍ଷ ସହଯୋଗ ଲୋଡ଼ା । ଆମେ ସାଧାରଣ ମଣିଷମାନେ ସେମାନଙ୍କ କବଳରୁ କିପରି ଆମ ରାଜ୍ୟ ରକ୍ଷା କରି ପାରିବା ?"

ଚନ୍ଦସେନ ସେନାପତିଙ୍କ ଏ କଥା ଶୁଣି ବିରକ୍ତ ହେଲେ । ତେବେ ନିଜକୁ ସମ୍ଭାଳି କହିଲେ, "ସେନାପତି ! ଆମେ କ'ଣ ଆମ ରାଜ୍ୟ ରକ୍ଷା କରିବା ସକାଶେ ଦଳେ ରାକ୍ଷସଙ୍କୁ ବାନ୍ଧି ନେଇଯାଇ ପାରିବା ? ନା ରାକ୍ଷସମାନଙ୍କ ପାଖରେ ଆମ ରାଜ୍ୟ ବନ୍ଧକ ଦେବା ? ତୁମେ ଜଣେ ଯୋଦ୍ଧା । ଆମେ ଯଦି ଆମ ରାଜ୍ୟ



ରକ୍ଷା କରି ନ ପାରିବା, ତେବେ ମୁଁ ରାଜପଦ ଓ ତମେ ସେନାପତି ପଦ ଛାଡ଼ିଦେବା ଆବଶ୍ୟକ ।"

ସେନାପତି ଲଜ୍ଜିତ ହେଲେ । ଆଉ କିଛି କହିଲେ ନାହିଁ ।

ସେମାନେ ଅଳ୍ପ ଦୂର ଯାଇଛନ୍ତି, ପଛରୁ ଚିତ୍କାର ଶୁଭିଲା । ଚନ୍ଦ୍ରସେନ ଆଶ୍ଚର୍ଯ୍ୟ ହୋଇ ବୁଲି ଅନାଇଲେ । "ମହାରାଜ, ମହାରାଜ !" ବୋଲି ଡାକ ଛାଡ଼ି ଦୁଇଜଣ ରାକ୍ଷସ ସେମାନଙ୍କ ଆଡ଼କୁ ଦୌଡ଼ି ଦୌଡ଼ି ଆସୁଥିବାର ସେମାନେ ଦେଖିଲେ ।

ଚନ୍ଦ୍ରସେନ ଅପେକ୍ଷା କଲେ । ପ୍ରଥମେ ଆଗେ ଆଗେ ଆସୁଥିବା ଦୁଇ ରାକ୍ଷସ ତାଙ୍କ ପାଖକୁ ଆସି ଗମ୍ଭୀର ସ୍ୱରରେ ନିଃଶ୍ୱାସ ନେଇ କହିଲେ, "ମହାରାଜ ! ଅଗ୍ନିଦ୍ୱୀପର ଲୋକେ ପୁଣି ଆମ ବଣ ଉପରେ ଚଢ଼ଉ କରିବେ ନାହିଁ ତ ?"

ଚନ୍ଦ୍ରସେନ ପୂର୍ବ ଦିଗକୁ ଅନାଇ କହିଲେ, "ସୂର୍ଯ୍ୟୋଦୟ ସକାଶେ ଅଧିକ ବିଳମ୍ବ ନାହିଁ । ଦିନବେଳେ ସେମାନେ ଆସିବେ ବୋଲି ମୋର ମନେ ହୁଏନାହିଁ ।"

"ମହାରାଜ, ଆମ ରାଜା ଉଗ୍ରାକ୍ଷ ଆପଣଙ୍କୁ ଡାକୁଛନ୍ତି । ସେ ବର୍ତ୍ତମାନ କୁମ୍ଭୀ ହ୍ରଦ ପାଖରେ ଅଛନ୍ତି । ଦୟାକରି ଚାଲନ୍ତୁ ।" ଦୁଇ ରାକ୍ଷସ କହିଲେ ।

"ମୁଁ ତ ବର୍ତ୍ତମାନ ତାଙ୍କଠୁଁ ବିଦାୟ ନେଇ ଆସିଲି । ହଠାତ୍ ପୁଣି ଏମିତି ଦରକାର କ'ଣ ପଡ଼ିଲା ?" ଚନ୍ଦ୍ରସେନ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ମହାରାଜ, ଅଗ୍ନିଦ୍ୱୀପର ଗୋଟାଏ ଲୋକ ଅଟକ ଯାଇଛି । ତେଣୁ ଆମ ରାଜା ଆପଣଙ୍କୁ ଡାକୁଛନ୍ତି ।"

"ସତେ ? ତାକୁ ବନ୍ଦୀ କରିଛ ତ ?" ଚନ୍ଦ୍ରସେନ ପଚାରିଲେ ।

"ନା, ମହାରାଜ ! ସେ ଗଛ ଚଢ଼ି ବସିଛି । ଓହ୍ଲାଇବାକୁ ମନା କରୁଛି । ଆପଣ ଆସିଲେ ଯାହା କରିବାର କରିହେବ ।"

ରାକ୍ଷସ ବାର୍ତ୍ତାବହଠୁଁ ଏ ଖବର ପାଇ ଚନ୍ଦ୍ରସେନ ଆଉ ଦ୍ୱିଧା ନକରି କୁମ୍ଭୀ ହ୍ରଦ ଆଡ଼େ ଚାଲିଲେ । ଦୁଇ ରାକ୍ଷସ ଆଗେ ଆଗେ ବାଟ ଦେଖାଇ ଚାଲିଥାନ୍ତି । ଚନ୍ଦ୍ର ପଛରେ

ଗୋଟାଏ ଲୋକ ଗଛ ଚଢ଼ି ବସିଛି । ତାକୁ ତଳକୁ ଆଣିବା ଭଳି ଶକ୍ତି କ'ଣ ଉଗ୍ରାକ୍ଷର ନାହିଁ ? ନା ଏ ରାକ୍ଷସ ଦୁଇଜଣ ମଦ ପିଇ ଯାହା ମନ ତାହା ଗପୁଛନ୍ତି ? ଚନ୍ଦ୍ରସେନ ଏହି ସବୁ ବିଷୟ ଚିନ୍ତା କରୁଥାନ୍ତି ।

ଅଧଘଣ୍ଟାଏ ଭିତରେ ଚନ୍ଦ୍ରସେନ ଯାଇ କୁମ୍ଭୀ ହ୍ରଦ ପାଖରେ ପହଞ୍ଚିଗଲେ । ସେ ଦେଖିଲେ, ଦଳେ ରାକ୍ଷସ ସେଠି ଗୋଟାଏ ଗଛ ମୂଳରେ ଜମା ହୋଇଛନ୍ତି । ସେମାନଙ୍କ ଆଗରେ ଉଗ୍ରାକ୍ଷ । ସମସ୍ତଙ୍କ ଆଖି ଗଛ ଉପରେ । ଟିକିଏ ପାଖକୁ ଯାଇ ଚନ୍ଦ୍ରସେନ ଦେଖିଲେ, ବ୍ୟାଘ୍ରଚର୍ମଧାରୀ ଗୋଟାଏ ଲୋକ ଗଛ ଉପରେ ବସିଛି । ମଧ୍ୟେ ମଧ୍ୟେ ତରବାରି ହଲାଇ ପାଟି କରି ସେ ସମସ୍ତଙ୍କୁ ଡରାଇବାକୁ ଚେଷ୍ଟା କରୁଛି ।

ଚନ୍ଦ୍ରସେନଙ୍କୁ ଦେଖି ରାକ୍ଷସରାଜ ଉଗ୍ରାକ୍ଷ ଖୁସି ହେଲା । "ଚନ୍ଦ୍ରସେନ! ଏ ଲୋକ ତଳକୁ ଆସିବାକୁ ପ୍ରସ୍ତୁତ ନୁହେଁ । ତା'ର କାରଣ, ସେ ଭାବୁଛି ଆମେ ରାକ୍ଷସମାନେ ତାକୁ ଖାଇ ପକାଇବୁଁ । ସେ କହୁଛି କେହି ଗଛ ଚଢ଼ି ତାକୁ ଧରିବାକୁ ଚେଷ୍ଟା କଲେ ସେ ତରବାରି ଯୋଗେ ତାକୁ ମାରିବ ଓ ନିଜେ ବି ମରିବ । ତମେ ତାକୁ ଅଭୟ ଦେଇ ତଳକୁ ଆଣ ।" ଉଗ୍ରାକ୍ଷ କହିଲା ।

"ଏ ଲୋକ ଏଠାକୁ କେଉଁଠାରୁ ଆସିଲା ?" ଚନ୍ଦ୍ରସେନ ପଚାରିଲେ ।






"ରାତରେ ସେମାନଙ୍କ ସହ ଆମର ଲଢ଼େଇ ହେଉଥିବା ବେଳେ ନିଜ ଦଳଠୁଁ ଅଲଗା ହୋଇ ରହିଯାଇଥିବ ନିଶ୍ଚୟ। ଏହାଠୁଁ ଅନେକ କଥା ଜାଣିହେବ।" ଉଗ୍ରାକ୍ଷ କହିଲା।

ଚନ୍ଦସେନ ଗଛ ମୂଳକୁ ଯାଇ ଲୋକଟି ଆଡେ଼ ଅନାଇ କହିଲେ, "ଆସ, ଆସ, ତଳକୁ ଚାଲି ଆସ। ତମର କୌଣସି ଭୟ ନାହିଁ।"

ଲୋକଟି ଆଶ୍ଚର୍ଯ୍ୟ ହୋଇ ଚନ୍ଦସେନଙ୍କୁ ଲକ୍ଷ୍ୟ କରି ଦେଖିଲା। ଚନ୍ଦସେନ ପୁଣି ଥରେ ତାକୁ ଓହ୍ଲାଇ ଆସିବାକୁ କହିଲେ।

"ତମେ କିଏ? ତମେ କ'ଣ କୌଣସି ରାଜା?" ବ୍ୟାଘ୍ରଚର୍ମାବୃତ ଲୋକଟି ପ୍ରଶ୍ନ କଲା।

"ହଁ। ମୁଁ ମହାରାଜା ଚନ୍ଦସେନ। ଏ ବଣ ପ୍ରଦେଶ ଉପରେ ମୁଁ ରାଜା। ମୁଁ ତମକୁ କଥା ଦେଉଛି, ତମର କୌଣସି ଅନିଷ୍ଟ ହେବ ନାହିଁ।"

ରାକ୍ଷସମାନେ ସେମାନଙ୍କ ଆନୁଗତ୍ୟ ଦେଖାଇବା ନିମନ୍ତେ 'ମହାରାଜା ଚନ୍ଦସେନଙ୍କର ଜୟ' ବୋଲ୍ ଧ୍ୱନି ଦେଲେ।

ବ୍ୟାଘ୍ରଚର୍ମାବୃତ ଲୋକଟି ରାକ୍ଷସମାନଙ୍କ ଆଡ଼କୁ ଦୃଷ୍ଟିପାତ କରି ପୁଣି ଚନ୍ଦସେନଙ୍କୁ ପଚାରିଲା, "ଏ ରାକ୍ଷସମାନେ ମୋତେ ମାରିଦେବେ ନାହିଁ, ଏକଥା କିଏ କହିବ?"

"ଆରେ, ଆମେ କ'ଣ ଆମ ରାଜାଙ୍କ ନିର୍ଦ୍ଦେଶ ବିରୁଦ୍ଧରେ କିଛି କରିବୁଁ ବୋଲି ତମେ ଭାବୁଛ?" ନିଜେ ଉଗ୍ରାକ୍ଷ ଏକଥା କହିଲା ଓ 'ମହାରାଜା ଚନ୍ଦସେନଙ୍କ ଜୟ' ବୋଲି ନିଜେ ଧ୍ୱନି ଦେଇ ଚନ୍ଦସେନଙ୍କୁ ଜୁହାର ହେଲା। ସେ ଯେ ରାଜା ଚନ୍ଦସେନଙ୍କ ବଶୀଭୂତ, ସେ ଏହାହିଁ ଦେଖାଇବାକୁ ଚାହୁଁଥିଲା। ଚନ୍ଦସେନ ମନେ ମନେ କହିଲେ, "ବାସ୍ତବିକ ଜଣେ ମହାରାକ୍ଷସର କି ଦୁର୍ଦ୍ଦଶା!"

"ମହାରାଜ! ଆପଣଙ୍କ କଥା ଉପରେ ଭରସା ରଖି ମୁଁ ତଳକୁ ଆସୁଛି।" ଏହା କହି ଲୋକଟି ତୁରନ୍ତ ତଳକୁ ଚାଲି ଆସିଲା।

"ତମର ଭୟର କାରଣ ନାହିଁ। ନିଜ ତରବାରିଟି ଆମ ସେନାପତିଙ୍କୁ ଦେଇଦିଅ।" ଚନ୍ଦସେନ ନିର୍ଦ୍ଦେଶ ଦେଲେ। ଲୋକଟି

ଚନ୍ଦ୍ରସେନଙ୍କ ସେନାପତିଙ୍କ ହାତକୁ ତରବାରି ବଢ଼ାଇ ଦେଲା ।

"ଚନ୍ଦ୍ରସେନ, ଏହାକୁ ଯନ୍ତ୍ରଣା ଦେଇ କଥା ବୁଝାଇବା ଦରକାର ହେବ ନାହିଁ ବୋଧହୁଏ । ଲୋକଟି ଆପଣାଛାଏଁ ସବୁ କହିଦେବ ମନେ ହୁଏ ।" ଉଗ୍ରାକ୍ଷ ଚୁପ୍ ଚୁପ୍ ଚନ୍ଦ୍ରସେନଙ୍କୁ କହିଲା । ଲୋକଟି ସେକଥା ବୁଝିପାରି କହିଲା, "ହଁ, ହଁ, ମୁଁ ଯାହା ଜାଣେ ସବୁ କହିଦେବି । ଅଗ୍ନିଦ୍ୱୀପର ସେ ଦୁଷ୍ଟଲୋକେ ମୋତେ ବନ୍ଧୁ ଭଳି ବ୍ୟବହାର ଦେଖାଇ ଏଠାକୁ ନେଇ ଆସିଲେ, କିନ୍ତୁ ବିପଦବେଳେ ମୋତେ ଛାଡ଼ି ପଳାଇଲେ । ବର୍ତ୍ତମାନ ସେମାନେ ପୂର୍ବ ସାଗରରେ ସ୍ଥିତ ଅଗ୍ନିଦ୍ୱୀପରେ ପହଞ୍ଚି ଯିବେଣି ।"

"ତମେ ନିଜେ କ'ଣ ଅଗ୍ନିଦ୍ୱୀପରେ ବାସିନ୍ଦା ନୁହଁ ?" ଚନ୍ଦ୍ରସେନ ପଚାରିଲେ ।

"ଆଜ୍ଞା, ଅଗ୍ନିଦ୍ୱୀପରେ ଲୋକ ହୋଇଥିଲେ କି ମୋର ଏପରି ଦୁର୍ଦ୍ଦଶା ହୁଅନ୍ତା ? ମୁଁ କପିଳପୁରର ରାଜା ନାଗବର୍ମାଙ୍କ ସୈନ୍ୟବାହିନୀର ଲୋକ । ମୋ ନାମ ଅମରପାଳ ।" ଲୋକଟି ଉତ୍ତର ଦେଲା ।

"ନାଗବର୍ମା ?" ଚନ୍ଦ୍ରସେନ ଆଶ୍ଚର୍ଯ୍ୟ ହୋଇ ପଚାରିଲେ । "ନାଗବର୍ମା ତ କପିଳପୁରର ସେନାପତି ଥିଲା । ସେ ରାଜା ହେଲା କେବେ ? ରାଜା ବୀରସିଂହ କୁଆଡ଼େ ଗଲେ ?"

"ମହାରାଜା ବୀରସିଂହ ଅଗ୍ନିଦ୍ୱୀପର କୌଣସି କାରାଗାରରେ ବନ୍ଦୀ ଥିବେ । ନାଗବର୍ମା ତାଙ୍କ ରାଜ୍ୟ ଅପହରଣ କରି ତାଙ୍କୁ



ଅଗ୍ନିଦ୍ୱୀପକୁ ପଠାଇ ଦେଇଛି । ସେତିକି ନୁହେ, ତାଙ୍କର ଏକମାତ୍ର କନ୍ୟା ରାଜକୁମାରୀ କାନ୍ତିମତୀଙ୍କୁ ସେ ବିବାହ କରିବ ବୋଲି ଜିଦ୍ ଧରିଛି । ଅଗ୍ନିଦ୍ୱୀପର କ୍ରୂର ଲୋକଙ୍କ ସାହାଯ୍ୟରେ ସେ ଆଖପାଖର ରାଜ୍ୟ ସବୁକୁ ନିଜ ଅଧୀନକୁ ଆଣି ରାଜଚକ୍ରବର୍ତ୍ତୀ ବୋଲାଇବାକୁ ଚାହେଁ ।" ଅମରପାଳ କହିଲା ।

ଚନ୍ଦସେନ ଆଖପାଖର ରାଜ୍ୟ ସବୁ ବିଷୟରେ ବିଶେଷ କିଛି ଜାଣି ନଥିଲେ । ଅମରପାଳର କଥା କେତେଦୂର ସତ୍ୟ, ତାହା ସେ ଠଉରାଇବାକୁ ଚେଷ୍ଟା କରୁଥିଲେ ।

ସେତିକିବେଳେ ଅଳ୍ପ ଦୂରରୁ ଘୋଡ଼ାର ଟାପୁ ଶବ୍ଦ ଶୁଭିଲା । ଚନ୍ଦସେନ ଦେଖିଲେ, "ମନ୍ତ୍ରୀ ଜ୍ୟୋତୀନ୍ଦ୍ର ଚାରିଜଣ ସୈନିକ ସାଥିରେ ଧରି ଆସୁଛନ୍ତି । ଘୋଡ଼ାରୁ ଓହ୍ଲାଇ ଚନ୍ଦସେନଙ୍କୁ ଅଭିବାଦନ କରି ଜ୍ୟୋତୀନ୍ଦ୍ର କହିଲେ, "ମହାରାଜ, ଆପଣଙ୍କ ପିତାଙ୍କ ପାଖରୁ କିଛି ଜରୁରୀ ଖବର ଆସିଛି । ତାଙ୍କ ରାଜ୍ୟ ଧବଳଗିରି ଉପରେ ନାଗବର୍ମା ନାମକ କୌଣସି ଦୁଷ୍ଟ ଚଢ଼ାଉ କରିଛି । ଆପଣଙ୍କ ସୈନ୍ୟଦଳ ଧରି ଆପଣ ଧବଳଗିରିର ସହାୟତା ପାଇଁ ଯାଆନ୍ତୁ ।"

ସଙ୍ଗେ ସଙ୍ଗେ ଚନ୍ଦସେନ ନିଜ ସେନାପତିଙ୍କୁ କହିଲେ, "ତମେ କାଳ ବିଳମ୍ବ ନକରି ଆମ ସୈନ୍ୟଦଳରୁ ଅର୍ଦ୍ଧେକ ଧରି ଧବଳଗିରି ଯାତ୍ରା କର । ଏଠାକା ଅବସ୍ଥା ମୁଁ ସମ୍ଭାଳିବି ।"

"ଯେ ଆଜ୍ଞା ମହାରାଜ!" ଏହା କହି ସେନାପତି ଚାଲିଗଲେ ।

ଉଗ୍ରାକ୍ଷ ଅମରପାଳକୁ ପଚାରିଲା, "ନାଗବର୍ମା ସହିତ କ'ଣ ସେ ଭୟଙ୍କର ପକ୍ଷୀ ଉପରେ ସବାର୍ ହେବା ଅଗ୍ନିଦ୍ୱୀପର ଲୋକେ ଅଛନ୍ତି ?"

ଅମରପାଳ କିଛି କହିବାକୁ ଯାଉଥିଲା, କିନ୍ତୁ ଅଟକିଗଲା । ସେ ସମସ୍ତଙ୍କ ମୁହଁକୁ ଓ ପରେ ଥରେ ଆକାଶ ଆଡ଼କୁ ଅନାଇଲା ।

(କ୍ରମଶଃ)





# ସାଧୁ ଓ ଛଦ୍ମବେଶୀ

ନିଶା ଗରଜୁଥାଏ । ଭୁହାକୁ ଭୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ଯେତେବେଳେ ସେ ଶବଟିକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କଲେ, ସେତେବେଳେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଅନେକ ପୁଣ୍ୟ କାର୍ଯ୍ୟ କର ବୋଲି ଶୁଣିଛୁ । କିନ୍ତୁ ପୁଣ୍ୟ କାର୍ଯ୍ୟର ଫଳ ନିଶ୍ଚିତ ଭାବରେ ଶୁଭ ହେବ,

ବେତାଳ କଥା



ଏକଥା କହିପାରିବ କି? ଯିଏ ପୁଣ୍ୟ କାର୍ଯ୍ୟ କରେ ନାହିଁ, ଖାଲି ବାଧ୍ୟ ହୋଇ ଦାନ ଧର୍ମ କରେ, ସେ କ'ଣ କିଛି ସୁଫଳ ପାଏ ନାହିଁ? ଏସବୁ ପ୍ରଶ୍ନ ବଡ଼ ଜଟିଳ ହୋଇପାରେ, କିନ୍ତୁ ତୁମ ଭଳି ବୁଦ୍ଧିମାନ ଓ ଜ୍ଞାନୀ ବ୍ୟକ୍ତି ଏସବୁର ଉତ୍ତର ଦେବାକୁ ସକ୍ଷମ ହେବ, ଏ ଆଶା ମୁଁ କରୁଛି। ଗୋଟାଏ ଘଟଣା କହୁଛି, ମନ ଦେଇ ଶୁଣ। ଶୁଣିଲେ ଶ୍ରମଭାର ଲଘବ ମନେ ହେବ।"

ବେତାଳ ଗପିଲା: କିଛିଦିନ ତଳର କଥା। ବଚନପୁରରେ ଜଣେ ବଣିକ ଥିଲେ। ନାମ ରାମରତନ। ସେ ଥରେ ବେମାର ପଡ଼ିଲେ। ଚିକିତ୍ସାରେ କିଛି ଫଳ ହେଲା ନାହିଁ। ତାଙ୍କ ସ୍ତ୍ରୀ ଓ ପୁଅଝିଅ ସେ ନେଇ ବଡ଼ ଉତ୍କଣ୍ଠାରେ ରହିଥାନ୍ତି। ରାମରତନ ଜିଦ୍‌ଖୋର ଲୋକ। ତାଙ୍କୁ ରାଜଧାନୀକୁ ନେଇଯାଇ ରାଜବୈଦ୍ୟଙ୍କ ଦ୍ୱାରା ଚିକିତ୍ସା କରିବାର ପ୍ରସ୍ତାବ ହେଲା। କିନ୍ତୁ ସେ ପ୍ରସ୍ତାବକୁ ସେ ଉଡ଼ାଇଦେଲେ। ଆଖପାଖରେ ଯେତେ ବୈଦ୍ୟ କବିରାଜ ଥିଲେ, ସମସ୍ତେ ଦେଖି ସାରିଲେ। କିନ୍ତୁ କାହାରି ଔଷଧରେ ତାଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ହେଲା ନାହିଁ। ଥରେ ଜଣେ ସାଧୁ ନଗରୀକୁ ଆସିଥାନ୍ତି। ରାମରତନଙ୍କ ସ୍ତ୍ରୀ ହେମାଙ୍କ ଅନୁରୋଧରେ ସାଧୁ ତାଙ୍କ ଘରକୁ ଆସିଲେ ଓ ରାମରତନଙ୍କୁ ନିରୀକ୍ଷଣ କରି କହିଲେ, "ବାବୁ! ତମ ଅସୁଖ ଔଷଧରେ ଭଲ ହେବ ନାହିଁ। ତମେ ବେପାର ବାଣିଜ୍ୟରେ ଅନେକ ଅନ୍ୟାୟ କରିଛ, ଅନେକ ଲୋକଙ୍କୁ ଠକିଛ। ଏ ରୋଗ ସେହି ସବୁ ପାପର ଫଳ। ପୁଣ୍ୟ କାର୍ଯ୍ୟ କର। ଅନ୍ୟକୁ ସନ୍ତୋଷ ଦିଅ। ରୋଗ ବଳେ ଭଲ ହୋଇଯିବ।"

ସାଧୁ ଚାଲିଯିବା ପରେ ସ୍ତ୍ରୀ ହେମା, ଦୁଇ ପୁଅ ଓ ଦୁଇ ଝିଅ ରାମରତନଙ୍କ ପାଖକୁ ଆସିଲେ। ସେମାନେ ସାଧୁଙ୍କ ଉପଦେଶ ଶୁଣିଥିଲେ। ହେମା କହିଲେ, "ଆମେ ଗରିବ ଲୋକଙ୍କୁ ଖୁଆଇବା। ତାହାହିଁ ହେବ ପୁଣ୍ୟକାର୍ଯ୍ୟ।"

ରାମରତନ ଏ ପ୍ରସ୍ତାବ ଖଣ୍ଡନ କରି କହିଲେ, "ଖାଲି ଖୁଆଇଲେ କ'ଣ ହେବ? ଖାଇବା

ଲୋକର ସନ୍ତୋଷ ହେବା ଦରକାର । ସନ୍ତୋଷ ହେବାକୁ ହେଲେ ଯେଉଁ ପ୍ରକାର ଖାଦ୍ୟ ଖୁଆଇବାକୁ ହେବ, ସେ ପ୍ରକାର ଖାଦ୍ୟ ଆମେ ବା କେତେଥର ଖାଇ ପାରୁଛୁଁ ?"



ବଡ଼ ପୁଅ କହିଲା, "ତେବେ ଗୋଟାଏ ଦାତବ୍ୟ ଚିକିତ୍ସାଳୟ ଖୋଲି ଯାଉ ।"

ରାମରତନ କହିଲେ, "ତୋର ଜ୍ଞାନ ବୁଦ୍ଧି ନାହିଁ ଦେଖୁଛି । ଯଦି ଚିକିତ୍ସାରେ ରୋଗ ଭଲ ହେଉଥାନ୍ତା, ତେବେ ମୁଁ କାହିଁକି ଆଜିଯାଏ ରୋଗ ଭୋଗୁଥାନ୍ତି ?"

ବଡ଼ ଝିଅ କହିଲା, "ତେବେ ଗୋଟାଏ ବିଦ୍ୟାଳୟ ଖୋଲିଲେ କିପରି ହୁଅନ୍ତା ?"

ରାମରତନ କହିଲେ, "ପାଠ ପଢ଼ି କେହି ମଣିଷ ହୁଏ ନାହିଁ । ଚରିତ୍ର ବଡ଼ କଥା । ବିଦ୍ୟାଳୟରୁ ପିଲାଏ ଲେଖାପଢ଼ା ଶିଖନ୍ତି, ଚରିତ୍ର ପାଆନ୍ତି ନାହିଁ ।"

ସାନ ଝିଅ କହିଲା, "ଚାଲ ତୀର୍ଥାଟନ କରିବା । ଦେଅଁ ଦର୍ଶନରୁ ପୁଣ୍ୟ ହେବ ।"

ରାମରତନ କହିଲେ, "ଭଗବାନ ସବୁଠି ସବୁ ମୂର୍ତ୍ତି ଭିତରେ ଅଛନ୍ତି । ଖାଲି ଭିନ୍ନ ଭିନ୍ନ ନାମ । ଦେଅଁଙ୍କ ପ୍ରତି ଭକ୍ତି ଥିଲେ ତୀର୍ଥ ବୁଲିବା ଦରକାର ନାହିଁ । ତମେମାନେ ଆମ ଗାଁ ମନ୍ଦିରକୁ ସବୁଦିନେ ଯାଅ । ମୋ ପାଇଁ ପ୍ରାର୍ଥନା କର । ସେହିଥିରେ ମୁଁ ଭଲ ହୋଇଯିବି ।"

ସମସ୍ତେ ବୁଝିଲେ ଯେ ରାମରତନ ପଇସା ଖର୍ଚ୍ଚ କରିବାକୁ ଅନିଚ୍ଛୁକ । ତେଣୁ ସେମାନେ ଆଉ କିଛି ନକହି ସବୁଦିନ ମନ୍ଦିରକୁ ଗଲେ ଓ ପ୍ରାର୍ଥନା କଲେ । କିନ୍ତୁ କିଛି ଫଳ ହେଲା ନାହିଁ ।

ରାମରତନଙ୍କ ଅସୁଖ କଥା ପ୍ରଚାର ହୋଇଗଲା । ସେକଥା ଶୁଣିଲା ଅନ୍ୟ ଏକ ସହରରେ ଥିବା ରଘୁସିଂହ । ସେ ଅନେକ ବର୍ଷ ତଳେ ଥରେ ରାମରତନ ସହ ବ୍ୟବସାୟ କରୁଥିଲା । ରାମରତନ ତାକୁ ଠକି ଦେବା ଫଳରେ ସେ ସର୍ବସ୍ୱାନ୍ତ ହୋଇ ଯାଇଥିଲା । ସେ ପ୍ରତିଶୋଧ ନେବାକୁ ଅପେକ୍ଷା କରିଥିଲା । ବର୍ତ୍ତମାନ ରାମରତନ ଅସୁସ୍ଥ ଜାଣି ସେ ତାଙ୍କ ଘରୁ ଚୋରି କରିବାକୁ ସ୍ଥିର କଲା । ସାଧାରଣ ସମୟରେ ରାମରତନ ବହୁତ ସଜାଗ ଥାନ୍ତି ।



ସେ ପାଟଳିପୁର ଆସି ପର ପର ଦୁଇ ରାତି ରାମରତନଙ୍କ ଘରେ ପଶିଲା । କିନ୍ତୁ କୌଣସି ମୂଲ୍ୟବାନ ପଦାର୍ଥ ପାଇଲା ନାହିଁ । ସେ ଅନ୍ୟ କୌଶଳ କରିବାକୁ ସ୍ଥିର କଲା । ଲୁଚିରହି ସେ ଦୁଇଦିନ କାଳ କିଛି ଖାଇ ନଥାଏ ।

ଏଣେ ଘରଲୋକେ ବୁଝିପାରିଲେ ଯେ ରାତିରେ ଚୋର ଘରେ ପଶି ଜିନିଷପତ୍ର ଅଣ୍ଡାଳୁଛି । କିନ୍ତୁ ସେମାନେ ଏ ବିଷୟରେ ଅସୁସ୍ଥ ରାମରତନଙ୍କୁ କିଛି ଜଣାଇଲେ ନାହିଁ ।

ରଘୁସିଂହ ସାଧୁ ବେଶ ହୋଇ ସକାଳେ ରାମରତନଙ୍କ କୋଠରୀ ଭିତରକୁ ପଶି ଆସିଲା ଓ କହିଲା, "ଶେଠ୍‌ଜୀ ! ତମକୁ ବର୍ତ୍ତମାନ ଖରାପ ଯୋଗ ପଡ଼ୁଛି ।"

ରାମରତନ କ୍ରମେ ଦୁର୍ବଳ ହେବା ଯୋଗୁଁ ମନୋବଳ ବି ଭାଙ୍ଗି ଯାଇଥାଏ । ସେ ଭୟଭୀତ ହୋଇ ପଚାରିଲେ, "ବୋଇଲେ ?"

ସାଧୁବେଶୀ ରଘୁସିଂହ କହିଲା, "ତମେ ଜାଣ, ଲକ୍ଷ୍ମୀଙ୍କ ପ୍ରକୃତି ଚଞ୍ଚଳ । ସେ ତମ ଘରେ ଅନେକ ଦିନରୁ ରହିଲେଣି । ଏଣିକି ସେ ବାହାରି ପଳାଇବାକୁ ମନ କରୁଛନ୍ତି । ଦୁଇଥର ଚେଷ୍ଟା କଲେଣି । କିନ୍ତୁ କୌଣସି କାରଣରୁ ଅଟକି ଯାଇଛନ୍ତି । ଆଜି ରାତିରେ ବୋଧହୁଏ ପଳାଇବେ । ତାଙ୍କର ମନ ଖରାପ ଯୋଗୁଁ ତମ ଦେହ ଖରାପ !"

ଦୁଇ ରାତି ଧରି କେହି ଚୋରି କରିବାକୁ ଚେଷ୍ଟା କରୁଛି ବୋଲି ରାମରତନ ସିନା ଜାଣି ନଥିଲେ, ହେମା ଓ ଅନ୍ୟମାନେ ଜାଣିଥିଲେ । ସେମାନେ ଚମକିଗଲେ ।

ରାମରତନ ମିନତିପୂର୍ଣ୍ଣ କଣ୍ଠରେ ପଚାରିଲେ, "ସାଧୁଜୀ ! ଲକ୍ଷ୍ମୀଦେବୀଙ୍କୁ ଅଟକାଇ ରଖିବାର ଉପାୟ କ'ଣ କିଛି ନାହିଁ ? ତାଙ୍କୁ ଖୁସି କରି ମୋତେ ଭଲ କରି ପାରିବେ ?"

"ପାରିବ । ଆଜି ରାତିରେ ତାଙ୍କୁ ପୂଜା ଦ୍ୱାରା ତୁଷ୍ଟ କଲେ ସେ ରହିଯିବେ । ତମ ଦେହ ବି ଭଲ ହୋଇଯିବ ।" ରଘୁସିଂହ କହିଲା ।

ରାମରତନ ତାଙ୍କୁ ପୂଜା କରିବାକୁ ଅନୁରୋଧ କଲା । ଭଣ୍ଡ ସାଧୁକୁ ନାନା ପ୍ରକାର ସୁସ୍ୱାଦୁ ପଦାର୍ଥ ପରଶିଲେ ହେମା । ସେ ଦୁଇଦିନ

ପରେ ଆନନ୍ଦରେ ଖାଇପିଇ ବିଶ୍ରାମ ନେଲା ଓ ସନ୍ଧ୍ୟାବେଳକୁ ପୂଜାର ଆୟୋଜନ କଲା । ଲକ୍ଷ୍ମୀ ପ୍ରତିମାଙ୍କୁ ଆଗରେ ବସାଇ ସେ ପୂଜାର ଅଭିନୟ କଲାବେଳେ ହେମାଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ରଘୁସିଂହ ତାଙ୍କ ଆଡ଼କୁ ଅନାଇ ମନରେ ବହୁତ ଗ୍ଲାନି ଅନୁଭବ କଲା । କାରଣ ହେମା ତା' ସହିତ ଅତୀତରେ ଖୁବ୍ ସ୍ନେହପୂର୍ଣ୍ଣ ବ୍ୟବହାର କରୁଥିଲେ । ତେବେ ସେ ଗ୍ଲାନିବୋଧକୁ ସେ ମନରୁ ଦୂର କରିଦେଇ ସମସ୍ତଙ୍କୁ ପ୍ରସାଦ ସେବନ କରିବାକୁ କହିଲା । ସେ ପ୍ରସାଦରେ ସେ ଏପରି ଚିଜ ମିଶାଇ ଦେଇଥାଏ ଯେ ତାକୁ ଖାଇବାର ଅଳ୍ପ ସମୟ ଭିତରେ ସମସ୍ତଙ୍କ ଆଖିକୁ ଘୋର ନିଦ ଘୋଟି ଆସିଲା । ସମସ୍ତେ ପ୍ରାୟ ଚେତା ହରାଇଲେ ।

ରାମରତନଙ୍କର ମଧ୍ୟ ଏକା ଅବସ୍ଥା । ରଘୁସିଂହ ତାଙ୍କ ଚକଆ ତଳୁ ଚାବି ବାହାର କରିନେଇ ସିନ୍ଦୁକ ପେଡି ଖୋଲିଲା । ଅନେକ ଅଲଙ୍କାର ଓ ଟଙ୍କା ପଇସା ଥାଏ । ଆନନ୍ଦରେ ରଘୁସିଂହ ସବୁ ବାହାର କରିନେଲା । ତା'ପରେ ସେ ହେମାଙ୍କ ପଣତରୁ ଚାବି ନେଇ ଖୋଲିବାକୁ ଗଲା । ହେମାଙ୍କ ମୁହଁ ଉପରେ ତା' ଆଖି ପଡ଼ିବା ମାତ୍ରେ ସେ ରହିଗଲା । ହେମା ତା' ନିଜ ମା ଭଳି ଦିଶୁଥିଲେ । ଛିଃ, ଏହାଙ୍କଠୁଁ ସେ ଚୋରି କରିବାକୁ ବସିଛି ! ସେ ଚୋରି ପାଲଟି ଯାଇଛି ! ମୁହୂର୍ତ୍ତକ ଭିତରେ ତା' ଭିତରେ ସବୁ ଓଲଟ ପାଲଟ ହୋଇଗଲା । ସେ ଚୁପ୍‌ଚାପ୍ ବସି ରହିଲା ।

ଭୋର ହେବା ବେଳକୁ ହେମାଙ୍କ ଚେତା ଫେରିଲା । ସେ ସାଧୁବେଶୀ, ରଘୁସିଂହ ଆଡ଼କୁ ଅନାଇବା ମାତ୍ରେ ରଘୁସିଂହ ନିଜ କୀର୍ତ୍ତି କଥା ଗପିଗଲା ।

"ମା ! ଆପଣ ମୋତେ କ୍ଷମା କରନ୍ତୁ । ମୁଁ ଯାଉଛି ।" ସେ ଏହା କହି ବାହାରିଗଲା ।

ଏହା ପରେ ପରେ ରାମରତନ ହେମାଙ୍କୁ ଡାକି କହିଲେ, "ଆଶ୍ଚର୍ଯ୍ୟର କଥା । ମୁଁ ସୁସ୍ଥ ଅନୁଭବ କରୁଛି । ଲକ୍ଷ୍ମୀଦେବୀ ନିଶ୍ଚୟ ଦୟା କରିଛନ୍ତି ।"



ହେମା କହିଲେ, "ହଁ ।"

ରାମରତନ ଏହା ପରେ ଖୁବ ଭଲ ହୋଇଗଲେ । ଲକ୍ଷ୍ମୀଦେବୀ କାଳେ ପୁଣି ପଳାଇବାକୁ ବାହାରିବେ, ସେଥିପାଇଁ ସେ ଦାନଧର୍ମ ବି କଲେ ।

ବେତାଳ ଟିକିଏ ଚୁପ୍ ରହି ମୁକାବିଲା କଲା ଭଳି କଣ୍ଠରେ ପଚାରିଲା, "ରାଜା! ଏହା କିପରି ସମ୍ଭବ ହେଲା? ଯେଉଁ ରାମରତନ ଅସଲ ସାଧୁଙ୍କ ଉପଦେଶ ମାନିଲା ତାହିଁ କି ଆରୋଗ୍ୟ ହୋଇ ପାରିଲା ନାହିଁ, ସେ ନକଲି ସାଧୁର ମିଥ୍ୟା ପରାମର୍ଶରେ ଭଲ ହୋଇଗଲା କିପରି? ଯେଉଁ ରାମରତନ ଜୀବନରେ କାହାକୁ ହେଲେ ସନ୍ତୋଷ ଦେଇ ନାହିଁ, ସେ କିପରି ପୁଣ୍ୟର ଅଧିକାରୀ ହୋଇପାରିଲା? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: "ଏ ସଂସାରର ଜଣକ ଭାଗ୍ୟ ଅନେକ ସମୟରେ ଅନ୍ୟଜଣଙ୍କ ଭାଗ୍ୟ ସହ ମିଶି ହୋଇ ରହିଥାଏ । ରାମରତନଙ୍କ ମନରେ ସିନା ପୁଣ୍ୟ ଚିନ୍ତା ନଥିଲା, କିନ୍ତୁ ହେମାଙ୍କ ମନରେ ଥିଲା । ରଘୁସିଂହ ଦୁଇଦିନ ପରେ ହେମାଙ୍କ ହାତରୁ ଖାଇ ଗଭୀର ସନ୍ତୋଷ ଲାଭ କଲା । ହେମା ଭକ୍ତି ଭରେ ଲକ୍ଷ୍ମୀଙ୍କୁ ପୂଜା କଲେ । ଅତଏବ ତାଙ୍କ ପୁଣ୍ୟର ପ୍ରଭାବ ରାମରତନଙ୍କ ଉପରେ ପଡ଼ିବା ସ୍ୱାଭାବିକ । ତେଣୁ ଏ ଘଟଣା ସମ୍ଭବ ହେବାରେ ବିସ୍ମୟ କିଛି ନାହିଁ ।"

ସର୍ତ୍ତ ଅନୁସାରେ ରାଜା ନୀରବ ରହିବା କଥା । ଅତଏବ ସେ ଉତ୍ତର ଦେବା ସକାଶେ କଥା କହିବାରୁ ବେତାଳ ପୁନରାୟ ତାଙ୍କ କାନ୍ଧରୁ ଖସିଯାଇ ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ତୀର୍ଥଯାତ୍ରୀ

ଦେବପୁରୀରେ ରହୁଥିଲେ ମହେନ୍ଦ୍ର ମହାରଣା । ସେ ଅଳଙ୍କାର ବ୍ୟବସାୟ କରୁଥିଲେ । ଭିନ୍ନ ଭିନ୍ନ ପ୍ରକାର ରତ୍ନ ଚିହ୍ନିବାରେ ମଧ୍ୟ ତାଙ୍କର ବିଶେଷ ଦକ୍ଷତା ଥିଲା । ଜୀବନରେ ସେ ନ୍ୟାୟସଙ୍ଗତ ମାର୍ଗରେ ବେଶ କିଛି ଉପାର୍ଜନ କରିଥିଲେ ।

ଥରେ ସେ ତାଙ୍କ ସ୍ତ୍ରୀ ଲୀଳାବତୀଙ୍କୁ ନେଇ ତୀର୍ଥ ପର୍ଯ୍ୟଟନରେ ବାହାରିଲେ । ବାହାରିବା ବେଳେ ସେ ତାଙ୍କ ଗୁରୁଙ୍କୁ ପ୍ରଣାମ କରିବାକୁ ଗଲେ । ଗୁରୁ ଆଶୀର୍ବାଦ ଦେବାବେଳେ ହସି ହସି ତାଙ୍କୁ କହିଲେ, "ଦେଖ ବାପା, ତୀର୍ଥ ବୁଲିଲା ବେଳେ ହୃଦୟରେ ଭଗବାନଙ୍କ ଛଡ଼ା ଆଉ କିଛି ଆକର୍ଷଣ ଯେପରି ନ ରହେ । ଭଗବାନ ତମକୁ ଯଥେଷ୍ଟ ଦେଇଛନ୍ତି । ତେବେ ମଣିଷର ଚରିତ ହେଲା, ଯେତେ ପାଇଲେ ମଧ୍ୟ ତା' ମନ ଆହୁରି ପାଇବାକୁ ଆକୁଳ ବିକୁଳ ହେଉଥାଏ । ତମେ ସେପରି ସାଧାରଣ ଲୋକ ନୁହେଁ ବୋଲି ମୋର ବିଶ୍ୱାସ । ତେଣୁ ତମକୁ ସତର୍କ କରି ଦେଉଛି । ଟଙ୍କା ପଇସା, ଧନରତ୍ନ, ଏସବୁ ପ୍ରତି ମନ ଗଲେ ତୀର୍ଥ ଯାତ୍ରାର ପୁଣ୍ୟଫଳ ମିଳିବ ନାହିଁ ।"

ମହେନ୍ଦ୍ର ଶ୍ରଦ୍ଧାରେ ଗୁରୁଙ୍କ ଉପଦେଶ ଶୁଣିଲେ ଓ ତାହା ମନେ ରଖିଲେ ।

ସାଧାରଣ ବାଟୋଇ ଭାବରେ ସେ ଓ ଲୀଳାବତୀ ଯାଉଥାନ୍ତି । ରାତିରେ ହାଟ ବଜାରରେ ନହେଲେ କୌଣସି ଧର୍ମଶାଳାରେ ବିଶ୍ରାମ କରୁଥାନ୍ତି ।

ଦିନେ ସେମାନେ ଏକ ନଦୀ ତୀରରେ ପହଞ୍ଚିବା ବେଳକୁ ଦୁଇ ପହର ବେଳ । ଦୁହେଁ ଗୋଟିଏ ବରଗଛ ତଳେ ବିଶ୍ରାମ କଲେ । ହଠାତ୍ ମହେନ୍ଦ୍ର ବୁଝିଲେ ଯେ ସେ ନଦୀର

ନାମ ସୁବର୍ଣ୍ଣରେଖା । ସେପାରିରେ ଥିବା ପାହାଡ଼ର ନାମ ରତ୍ନଗିରି । ସେ ଚମକି ପଡ଼ିଲେ ଓ କୌତୂହଳୀ ହେଲେ । ନଦୀ ସେପାରି ପାହାଡ଼ରେ ଥରେ ଥରେ ଭଲ ଭଲ ପ୍ରକାର ରତ୍ନ ମିଳେ ବୋଲି ମହେନ୍ଦ୍ର ଜାଣିଥିଲେ । ସେ ବାରମ୍ବାର ସେ ଆଡ଼େ ଦୃଷ୍ଟିପାତ କରି ନଦୀକୁ ସ୍ନାନ କରିବାକୁ ଗଲେ । ସ୍ନାନ ଶେଷ କରି ଗଛମୂଳକୁ ଆସି ଦେଖନ୍ତି, ଲୀଳାବତୀ ଶୋଇ ପଡ଼ିଛନ୍ତି । ତାଙ୍କ ପାଖରେ ଖଣ୍ଡିଏ ଉଜ୍ଜ୍ୱଳ ଚିଜ ପଡ଼ିଛି । ମହେନ୍ଦ୍ର ଚିଜଟିକୁ ଉଠାଇ ନେଇ ଦେଖିଲେ, ତାହା ଖଣ୍ଡିଏ ମୂଲ୍ୟବାନ ରତ୍ନ । ପ୍ରଥମେ ତାକୁ ସେ ନିଜ ଥଳିରେ ପୂରାଇବାକୁ ମନ କଲେ । କିନ୍ତୁ ଗୁରୁଙ୍କ ଉପଦେଶ ମନେ ପଡ଼ିବାରୁ ସେ ତାହା ନ କରି ତଳେ ପକାଇ ଦେଲେ । ପୁଣି ଭାବିଲେ, ଲୀଳାବତୀ ତାକୁ ଦେଖିଲେ ଲୋଭ କରି ପାରନ୍ତି ! ସେ ତେଣୁ ତାକୁ ବାଲିରେ ଲୁଚାଇ ଦେଲେ ।

କିଛି ସମୟ ପରେ ଦୁହେଁ ପୁଣି ବାଟ ଚାଲିଲେ । ସନ୍ଧ୍ୟାବେଳକୁ ମହେନ୍ଦ୍ର କହିଲେ, "ଆଜି ସେ ଗଛ ମୂଳରେ ତମ ପାଖରେ ଗୋଟାଏ ଚିଜ ପଡ଼ିଥିଲା ଯେ..."

ଲୀଳାବତୀ ମନେ ପକାଇ କହିଲେ, "ହଁ, ହଁ, ଖଣ୍ଡିଏ ରତ୍ନ ହୋଇଥିବ ପରା । ପକ୍ଷୀଟିଏ ତାକୁ ଥଣ୍ଟରେ ଧରି ଆସି ଗଛରେ ବସିଲା ବେଳେ ତାହା ଖସି ପଡ଼ିଥିଲା !"

ମହେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ ତାହା ଦେଖିଥିଲ ? ତମର ସେଥିପ୍ରତି ଆଗ୍ରହ ହେଲା ନାହିଁ ?"

"ଦେଖିଥିଲି ଓ ଭୁଲି ଯାଇଥିଲି । ରତ୍ନ ପ୍ରତି ଆଗ୍ରହ ଆସନ୍ତା କେଉଁଠୁ ? ଆମେ ପରା ପୁଣ୍ୟ ଉଦ୍ଦେଶ୍ୟରେ ବାହାରିଛୁ ! ପୁଣ୍ୟଠୁଁ ବଳି ମୂଲ୍ୟବାନ ରତ୍ନ କ'ଣ ଅଛି ?" ଲୀଳାବତୀ କହିଲେ ।

ମହେନ୍ଦ୍ର ମନେ ମନେ ଆହୁରି ବିସ୍ମିତ ଓ ଆନନ୍ଦିତ ହେଲେ ।






ଭାରତର ମନ୍ଦିର

# କାଞ୍ଚିପୁରମ୍

ଥରେ ବ୍ରହ୍ମା ଗୋଟିଏ ଯଜ୍ଞ କରିବାକୁ ସ୍ଥିର କଲେ । ଆଜିର କାଞ୍ଚିର ନାମ ସେତେବେଳେ ଥିଲା ସତ୍ୟବ୍ରତ କ୍ଷେତ୍ର । ବ୍ରହ୍ମା ସେଠାରେ ଯଜ୍ଞ ଆରମ୍ଭ କଲେ । କାର୍ଯ୍ୟ ପ୍ରଥମେ ସୁରୁଖୁରୁରେ ଆଗେଇ ଚାଲିଲା ।

କିନ୍ତୁ ସରସ୍ୱତୀ ତାହା ପସନ୍ଦ କଲେ ନାହିଁ । ସେ ବେଗବତୀ ନାମରେ ନଦୀ ରୂପ ନେଇ ବୋହିଆସି ଯଜ୍ଞସ୍ଥଳ ପ୍ଲାବିତ କରିବାକୁ ଚେଷ୍ଟା କଲେ । ତେବେ ସେ ତାହା କରି ପାରିବା ପୂର୍ବରୁ ବିଷ୍ଣୁ ସ୍ରୋତ ମୁହଁରେ ଶୋଇପଡ଼ି ତାହା ରୋକିଦେଲେ ।





ବ୍ରହ୍ମାଙ୍କ ଅନୁରୋଧ ମାନି ବିଷ୍ଣୁ ତେଣିକି ସେଇଠି ରହିଲେ । ସେଠାରେ ତାଙ୍କ ନାମ ବରଦରାଜ ସ୍ୱାମୀ—ଅର୍ଥାତ୍ ଯେଉଁ ଦୟାମୟ ଦିଅଁ ବର ଦେବାକୁ ପ୍ରସ୍ତୁତ । ଏହାହିଁ କିମ୍ବଦନ୍ତୀ । ଆଜିର ମନ୍ଦିର ଅତୀତର ବହୁ ମନ୍ଦିରର ଭଗ୍ନାବଶେଷ ଉପରେ ନିର୍ମିତ ।




କାଞ୍ଚିପୁରର ଅନ୍ୟତମ ମନ୍ଦିର ହେଲା କୈଳାଶନାଥ ମନ୍ଦିର । ଏହାର ପ୍ରତିଷ୍ଠାତା ପଲ୍ଲବ ବଂଶର ରାଜ ସିଂହ । ଏ ମନ୍ଦିର ସ୍ଥାପତ୍ୟ ପାଇଁ ବିଖ୍ୟାତ । ଷୋହଳ ଖଣ୍ଡ ପଥର ପ୍ରୟୋଗରେ ଶିବଲିଙ୍ଗ ନିର୍ମିତ । ଏହାର ମଧ୍ୟ ପ୍ରାଚୀରରେ ରହିଛି ୫୮ ଟି ଛୋଟ ଛୋଟ ମନ୍ଦିର ।

ଆଉ ଏକ ସୁନ୍ଦର ମନ୍ଦିର ହେଲା ବୈକୁଣ୍ଠ ପେରୁମଲ ମନ୍ଦିର । ଆଉ ଜଣେ ପଲ୍ଲବ ରାଜା ନନ୍ଦୀ ବର୍ମନ୍ ଏହାର ପ୍ରତିଷ୍ଠାତା । ଏହାର ତ୍ରିତଳ ବିମାନରେ ବିଷ୍ଣୁମୂର୍ତ୍ତି ଦଣ୍ଡାୟମାନ, ଉପବିଷ୍ଟ ତଥା ଶୋଇତ ଅବସ୍ଥାରେ ଦେଖାଯା'ନ୍ତି ।





ଅତି ପ୍ରାଚୀନ ମନ୍ଦିର ହେଲା ଏଠାକାର ଏକାମ୍ରନାଥ ମନ୍ଦିର । ଅତୀତରେ ଏ ମନ୍ଦିର ଏକ ସହସ୍ର ସ୍ତମ୍ଭ-ବିଶିଷ୍ଟ ଥିଲା । ବର୍ତ୍ତମାନ ମଧ୍ୟ ଛଅଶହ ଷୋହଳ ସ୍ତମ୍ଭ ଅବଶିଷ୍ଟ ରହିଛି । ଏହାର ପରିସର ଭିତରେ ଅନେକ ଛୋଟ ଛୋଟ ମନ୍ଦିର, ମଣ୍ଡପ, ଗୋପୁରମ୍ ଓ ପୁଷ୍କରିଣୀ ଦେଖିବାକୁ ମିଳେ ।

ପୁରାକାଳରେ ଥରେ ସବୁ ଦେବଦେବୀ ଓ ଋଷିମାନେ ଶିବ ପାର୍ବତୀଙ୍କ ବିବାହ ଦେଖିବା ନିମନ୍ତେ କୈଳାସ ପର୍ବତକୁ ଆସିଥିବାରୁ ଶିବ ଅଗସ୍ତ୍ୟଙ୍କୁ ଦକ୍ଷିଣକୁ ଯିବାକୁ କହିଲେ । ନହେଲେ ଏ ଦବ୍ୟଭୂମି ଭାରସାମ୍ୟ ହରାଇ ବସନ୍ତା ।





ଅଗସ୍ତ୍ୟ ଅନିଚ୍ଛା ସତ୍ତ୍ୱେ ସେ ନିର୍ଦ୍ଦେଶ ମାନିଲେ । କିନ୍ତୁ ସେ ଏକ ସର୍ତ୍ତ ରଖିଲେ—ଶିବ ପାର୍ବତୀଙ୍କ ବିବାହ ସେ ନିଜେ ଦେଖିବା ସକାଶେ ଯେପରି ତାହା ଆଉ ଥରେ ଅନୁଷ୍ଠିତ ହେବ । ସେ ସର୍ତ୍ତ ଯୋଗୁଁ ପାର୍ବତୀ କନ୍ୟା ରୂପେ ଆସି କାମ୍ପା ନଦୀ ଶଯ୍ୟାରେ ଶିବ ପୂଜା କଲେ ।

ତାଙ୍କୁ ଭୟଭୀତ କରିବା ନିମନ୍ତେ ଶିବ ନଦୀରେ ପ୍ରବଳ ସ୍ରୋତ ସୃଷ୍ଟି କଲେ । ପାର୍ବତୀ ଯେଉଁ ଶିଳାଖଣ୍ଡକୁ ପୂଜା କରୁଥିଲେ, ତାହାକୁ ସ୍ରୋତ ଭସାଇ ନେବାକୁ ବସିବାରୁ ପାର୍ବତୀ ତାକୁ କୁଣ୍ଢାଇ ଧରି ରହିଲେ । ତା'ପରେ ଶିବ ଦେଖାଦେଲେ ଓ ଅଗସ୍ତ୍ୟଙ୍କ ତୃପ୍ତି ପାଇଁ ଶିବ-ପାର୍ବତୀ ବିବାହ ପୁଣି ଥରେ ଅନୁଷ୍ଠିତ ହେଲା ।





ଏକାମ୍ରନାଥ ନାମ ଗୋଟିଏ ପୁରୁଣା ଆମ୍ବଗଛର ନାମରୁ ଆସିଛି ବୋଲି କୁହାଯାଏ । ଆମ୍ବଗଛଟି ଏଯାଏ ରହିଛି ଏବଂ ଏହାର ବୟସ ଅନୁମାନ କରିବା ସମ୍ଭବ ନୁହେଁ ବୋଲି କୁହାଯାଏ । ଏହାର ଚାରି ଶାଖା ଚାରି ବେଦର ପ୍ରତୀକ ।

କାଞ୍ଚିପୁରମ୍ ଭାରତର ସାତ ପବିତ୍ର ନଗରୀର ଅନ୍ୟତମ । ଶଙ୍କରାଚାର୍ଯ୍ୟ ଏଠାରେ ତାଙ୍କର ଚାରି ମଠରୁ ଗୋଟିଏ ପ୍ରତିଷ୍ଠା କରିଥିଲେ । ନାମ କାମକୋଟି ପୀଠ । ଜଣେ ବିଖ୍ୟାତ ମୁସଲ୍ମାନ ସନ୍ଥ ହଜ୍ରତ୍ ହାମିଦ୍ ଆଉଲିୟା କାଞ୍ଚିରେ ଜୀବନ କଟାଇଥିଲେ ।





ଏହି ପ୍ରାଚୀନ ନଗରୀ ଏକଦା ବୌଦ୍ଧଧର୍ମ ଚର୍ଚ୍ଚା ପାଇଁ ମଧ୍ୟ ବିଖ୍ୟାତ ଥିଲା । ସପ୍ତମ ଶତାବ୍ଦୀରେ ହୁଏନ୍ ସାଂ ଏଠାକୁ ଆସିଥିଲେ ଓ ଏଠାରେ ଅନେକ ବୌଦ୍ଧ କୀର୍ତ୍ତି ଦେଖିଥିଲେ । ସେସବୁ ବିଲୁପ୍ତ ହୋଇ ଯାଇଛି ।



# ଦୃଷ୍ଟିକୋଣ

ଯୁବରାଜ ସୁରସିଂହ ଯେତେବେଳେ ପିତାଙ୍କ ମୃତ୍ୟୁ ପରେ ଯଶୋଦାପୁର ରାଜ୍ୟର ସିଂହାସନରେ ବସିଲେ, ସେତେବେଳେ ତାଙ୍କୁ ତାଙ୍କ ବୃଦ୍ଧ ମନ୍ତ୍ରୀଙ୍କ ଉପରେ ବିଶେଷ ଭାବରେ ନିର୍ଭର କରିବାକୁ ପଡ଼ିଲା । ମନ୍ତ୍ରୀଙ୍କୁ ସୁରସିଂହଙ୍କ ପିତା ବିଶେଷ ଶ୍ରଦ୍ଧା କରୁଥିଲେ । ମନ୍ତ୍ରୀ ଯେ ଜଣେ ସୁଦକ୍ଷ ଶାସକ, ଏଥିରେ ବି ସନ୍ଦେହ ନଥିଲା । କିନ୍ତୁ ମନ୍ତ୍ରୀଙ୍କର ବଡ଼ ଦୋଷ ହେଲା, ସେ କବିମାନଙ୍କୁ ପସନ୍ଦ କରୁ ନଥିଲେ ।

ପରଲୋକଗତ ରାଜା କିନ୍ତୁ କବି ଓ ପଣ୍ଡିତମାନଙ୍କ ପ୍ରତି ବିଶେଷ ଶ୍ରଦ୍ଧାଶୀଳ ଥିଲେ । ସେ ମଧ୍ୟେ ମଧ୍ୟେ କବି-ସମ୍ମିଳନୀ ଆହ୍ୱାନ କରୁଥିଲେ ଓ ମୁଗ୍ଧ ହୋଇ କବିତା ଆବୃତ୍ତି ଶୁଣୁଥିଲେ । ମନ୍ତ୍ରୀ ଏସବୁ ମୋଟେ ପସନ୍ଦ କରୁ ନଥିଲେ । କିନ୍ତୁ ରାଜାଙ୍କ ସଉକ୍ ଉପରେ କିଛି କହିବେ, ସେଭଳି ସାହସ ତାଙ୍କର ନଥିଲା । ପୁରୁଣା ରାଜାଙ୍କ ମୃତ୍ୟୁ ପରେ ମନ୍ତ୍ରୀଙ୍କ ସାହସ ବଢ଼ିଗଲା ।

ସେ ନୂଆ ରାଜା ସୁରସିଂହଙ୍କୁ କହିଲେ, "ମହାରାଜ, ଆପଣଙ୍କ ପିତା କବିମାନଙ୍କୁ ନାନା ପ୍ରକାର ପୁରସ୍କାର ବା ଉପଢୌକନ ଦେଇ ପ୍ରଚୁର ଅର୍ଥ ଖର୍ଚ୍ଚ କରୁଥିଲେ । ଆପଣ ସେପରି କରନ୍ତୁ ନାହିଁ । କାରଣ, ସେଥିରେ କିଛି ଲାଭ ନାହିଁ । କବିମାନେ ରାଜ୍ୟର କେଉଁ ହିତ କରିପକାଇବେ ?"

ରାଜା ମନ୍ତ୍ରୀଙ୍କ ସହ ଏ ବିଷୟରେ ଏକମତ ନହେଲେ ସୁଦ୍ଧା କିଛି କହିପାରୁ ନଥିଲେ । ରାଜାଙ୍କ ନୀରବତାକୁ ମନ୍ତ୍ରୀ ସମ୍ମତି ରୂପେ ଧରିନେଲେ । ସେ ଏଥର ତାଚ୍ଛଲ୍ୟପୂର୍ଣ୍ଣ ଭାବରେ କବିମାନଙ୍କ ବିଷୟରେ ମନ୍ତବ୍ୟ ଦେବାକୁ ଲାଗିଲେ ଯେ କବିମାନେ ହତୋତ୍ସାହ

ଶ୍ୟାମ ଗୁପ୍ତ




ହୋଇଗଲେ ଓ ବିରକ୍ତ ହେଲେ । ଫଳରେ ଦରବାରକୁ କବିମାନଙ୍କ ଆଗମନ ବନ୍ଦ ହୋଇଗଲା ।

ଦିନେ ରାଜା ଓ ମନ୍ତ୍ରୀ ବସିଛନ୍ତି, ଜଣେ ତରୁଣ ଆସି ରାଜାଙ୍କୁ ଅଭିବାଦନ ଜଣାଇ କହିଲା, "ମହାରାଜ! ମୋ ପିତାମହ ଦସ୍ୟୁଶର୍ମା ଆପଣଙ୍କ ପିତାମହଙ୍କ ଦରବାରରେ ରାଜକବି ଥିଲେ । ମୋ ପିତା ଜୟଶର୍ମା ଅସୁସ୍ଥତା ବଶତଃ ଆପଣଙ୍କ ସେବା କରିପାରିଲେ ନାହିଁ । ଆମ ପରିବାର ରାଜ ସାହାଯ୍ୟରୁ ବଞ୍ଚିତ ହୋଇ ଅତ୍ୟନ୍ତ ଦୁଃସ୍ଥ ଅବସ୍ଥାରେ ରହିଛୁ । ମୁଁ ଦେବୀ କୃପାରୁ ମୋ ପିତାମହଙ୍କ ଭଳି କବିତା ଲେଖୁଛି । ମୋତେ ରାଜାଶ୍ରୟ ମିଳୁ ।"

ଦସ୍ୟୁଶର୍ମାଙ୍କ କବି ପ୍ରତିଭା ଯୋଗୁଁ ଯଶୋଦାପୁର ରାଜ୍ୟର ମର୍ଯ୍ୟାଦା ବଢ଼ିଥିଲା । ତାଙ୍କ ବଂଶ ଦୁଃସ୍ଥ ଅବସ୍ଥାରେ ଅଛନ୍ତି ଜାଣି ରାଜା ଦୁଃଖ ଅନୁଭବ କଲେ । ସେ କିଛି କହିବାକୁ ଯାଉଛନ୍ତି, ସେତିକିବେଳେ ମନ୍ତ୍ରୀ କହିଲେ, "ଯୁବକ! ତମ ପିତାମହ ଅବଶ୍ୟ ବହୁତ ଗୁଣୀ ବ୍ୟକ୍ତି ଥିଲେ । କିନ୍ତୁ ତମର ବଳ ଅଛି । ତମେ କିଛି ଶାରୀରିକ ପରିଶ୍ରମ କରି ଜୀବିକା ଉପାର୍ଜନ କରିବା ଉଚିତ । କବିତା ଲେଖି କ'ଣ ପାଇବ ?"

ଯୁବକ ଆଶ୍ଚର୍ଯ୍ୟ ହୋଇ କହିଲେ, "ମହାଶୟ, ଜୀବିକା ନିର୍ବାହ ସକାଶେ ଯେ କୌଣସି କାମ କରିବାକୁ ମୁଁ ପ୍ରସ୍ତୁତ । କିନ୍ତୁ ଯେଉଁ ଦିଗରେ ଯାହାର ଦକ୍ଷତା ଅଛି, ସେହି ଦିଗରେ କାର୍ଯ୍ୟ କରି ଜୀବିକା ନିର୍ବାହ ତା' ପାଇଁ ଉତ୍ତମ ନୁହେଁ କି? କାବ୍ୟ କବିତା ଚର୍ଚ୍ଚା ବିନା ମନୁଷ୍ୟର ବିକାଶ ଘଟିବ କିପରି? ସେ ଦିଗରେ ମୋତେ ରାଜା ଓ ରାଜ୍ୟର ସେବା କରିବାକୁ ସୁଯୋଗ ମିଳିଲେ ମୁଁ ଆନନ୍ଦିତ ହେବି । ଯଦି ତାହା ସମ୍ଭବ ନୁହେଁ, ତେବେ ମୁଁ ଶାରୀରିକ ପରିଶ୍ରମ ପାଇଁ ମଧ୍ୟ କୁଣ୍ଠିତ ନୁହେଁ ।"

ରାଜା ମନ୍ତ୍ରୀଙ୍କୁ କହିଲେ, "କବି ଦସ୍ୟୁଶର୍ମାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ଦେଖାଇ ଆମେ ଏ ଯୁବକକୁ କୌଣସି ନା କୌଣସି କାର୍ଯ୍ୟରେ ନିଯୁକ୍ତ କରିବା ଆବଶ୍ୟକ ।"

ମନ୍ତ୍ରୀ ଯୁବକଙ୍କୁ କହିଲେ, "ଦେଖ ଯୁବକ, ତମ ପିତାମହ ବଡ଼ କବି ହୋଇଥାଇ ପାରନ୍ତି । କିନ୍ତୁ ବାପା ଗୋସାପାଙ୍କ ନାମ ବିକି କେହି ଲାଭ ଉଠାଇବାର ପକ୍ଷପାତୀ ଆମେ ନୋହୁଁ । ଆମ ଘୋଡ଼ାଶାଳର ଜଣେ ସହିସର ମୃତ୍ୟୁ ହେବା ଫଳରେ ସେ ପଦ ଖାଲି ପଡ଼ିଛି । ତମେ ସେଥିରେ ଯୋଗ ଦେବାକୁ ପ୍ରସ୍ତୁତ ?"

"ମନ୍ତ୍ରୀ ମହୋଦୟ ! ମୁଁ ବାପା ଜେଜେ-ବାପାଙ୍କ ନାମ ବିକି ଲାଭ ଉଠାଇବାକୁ ଆସି ନାହିଁ । ପରିଚୟ ହିସାବରେ ସେମାନଙ୍କ ନାମ କହୁଛି । ମୁଁ ନିଜେ କବି । ଆପଣ ମୋର କବିତ୍ୱର ପରୀକ୍ଷା ନେଇ ପାରନ୍ତି । ତେବେ ଯଦି କବି ହିସାବରେ ମୁଁ ଉପାର୍ଜନ କରିବା ସମ୍ଭବ ନୁହେଁ, ମୁଁ ଘୋଡ଼ା ସହିସ ହେବାକୁ ପ୍ରସ୍ତୁତ ।" ଯୁବକ କହିଲେ ।

ମନ୍ତ୍ରୀ ହଠାତ୍ ଉତ୍ତେଜିତ ଭାବରେ କହିଲେ, "ମହାରାଜ, ଏ ଯୁବକର ମତଲବ୍ ଭଲ ନୁହେଁ । ନିଜେ ଶିକ୍ଷିତ ହୋଇଥିବା ସତ୍ତ୍ୱେ ଓ ବିଦ୍ୱାନ ପରିବାରର ସନ୍ତାନ ହେବା ସତ୍ତ୍ୱେ ସେ ଘୋଡ଼ା ସହିସ ଭାବରେ କାମ କରିବାକୁ ପ୍ରସ୍ତୁତ । ଏହା ପଛରେ ରହସ୍ୟ ଅଛି ।"

ରାଜା ଓ ଯୁବକ ବିସ୍ମିତ ଭାବରେ ମନ୍ତ୍ରୀଙ୍କ ଆଡ଼େ ଅନାଇଲେ । ରାଜା ପଚାରିଲେ, "କ'ଣ ସେ ରହସ୍ୟ ?"

"ଏ ଯୁବକ ଆମ ରାଜ୍ୟର ବଦ୍‌ନାମ କରିବାକୁ ଚାହେଁ । ଇଏ ଘୋଡ଼ା ସହିସ



ହେଲେ ଲୋକେ କହିବେ, ଯଶୋଦାପୁର ରାଜ୍ୟରେ କବିର ମର୍ଯ୍ୟାଦା ନାହିଁ । କବିକୁ ଘୋଡ଼ା ସହିସ ଭାବରେ ଚାଲିବାକୁ ହୁଏ !" ମନ୍ତ୍ରୀ କହିଲେ ।

ଯୁବକ ରାଜାଙ୍କ ଆଡ଼କୁ ଅନାଇ କହିଲେ, "ମହାରାଜ ! ଘୋଡ଼ା ସହିସ ହେବାର ପ୍ରସ୍ତାବ ମୁଁ ଦେଇନାହିଁ, ମନ୍ତ୍ରୀ ମହୋଦୟ ଦେଇଛନ୍ତି । ମୁଁ ଯଥାର୍ଥ କବି ଭାବରେ ରାଜାଶ୍ରୟ ଗୃହିଁଥିଲି । କିନ୍ତୁ ମୋ ବିଦ୍ୟା ଓ ବିବେକ ମୋତେ ଏତିକି ଶିକ୍ଷା ଦେଇଛି ଯେ କୌଣସି ନ୍ୟାୟସଙ୍ଗତ କାମ ନୀଚ ନୁହେଁ । ସେ ଯାହାହେଉ, ମନ୍ତ୍ରୀଙ୍କ ଦୃଷ୍ଟିକୋଣ ଓ ମୋ ଦୃଷ୍ଟିକୋଣ ଭିତରେ ଫରକ୍ ରହିଛି । ଅନୁମତି ମିଳିଲେ ସେ ଫରକ୍ କ'ଣ କହିବି ।"

"କୁହ ।" ରାଜା ନିର୍ଦ୍ଦେଶ ଦେଲେ ।

"ମନ୍ତ୍ରୀ ଭାବୁଛନ୍ତି ଲୋକେ କହିବେ ଏ ରାଜ୍ୟରେ କବିର ଆଦର ନାହିଁ ବୋଲି କବିକୁ ଘୋଡ଼ା ସହିସ ହେବାକୁ ପଡ଼ୁଛି । ମୁଁ ଭାବୁଛି ଲୋକେ କହିବେ ଯଶୋଦାପୁର ରାଜାଙ୍କ ଘୋଡ଼ା ସହିସ ବି କବି ! ସେ ରାଜ୍ୟରେ କାବ୍ୟ କବିତାର ଆଦର ଏତେ ଅଧିକ !" ଯୁବକ କହିଲେ ।

ରାଜା ହସି ପକାଇଲେ । ମନ୍ତ୍ରୀ ମଧ୍ୟ ହସିଲେ । ବୃଦ୍ଧ ମନ୍ତ୍ରୀ ଯୁବକର ପିଠି ଥାପୁଡ଼ାଇ କହିଲେ, "ତମକୁ ପରୀକ୍ଷା କରୁଥିଲି, ବାପା ! ତମେ ଉତ୍ତୀର୍ଣ୍ଣ ହେଲ ।"

ତା'ପରେ ମନ୍ତ୍ରୀ ରାଜାଙ୍କୁ କହିଲେ, "ଏ ଯୁବକ ଯେତିକି ନମ୍ର ସେତିକି ବୁଦ୍ଧିମାନ । ସେ କବି ହିସାବରେ ରହନ୍ତୁ ବା ଅମାତ୍ୟ ହିସାବରେ ରହନ୍ତୁ, ସେ ଦରବାରରେ ରହି ଆପଣଙ୍କୁ ପରାମର୍ଶ ଦେବାକୁ ଯୋଗ୍ୟ ।"

ରାଜା ଯୁବକଙ୍କୁ ରାଜକବି ଭାବରେ ନିଯୁକ୍ତ ଦେଲେ । ସେ କବି ଭାବରେ ଖ୍ୟାତି ଲାଭ କରିବା ସଙ୍ଗେ ସଙ୍ଗେ ପରେ ରାଜାଙ୍କ ମନ୍ତ୍ରୀ ହେଲେ ।





# ଉତ୍ତର ରାମାୟଣ

ମହର୍ଷି ଅଗସ୍ତ୍ୟ ଶ୍ରୀରାମଚନ୍ଦ୍ରଙ୍କୁ କହିଲେ—

ସୁକେଶର ପୁତ୍ର ମାଲ୍ୟବନ୍ତ, ମାଳୀ ଓ ସୁମାଳୀ ଲଙ୍କାକୁ ଯାଇ ସେଠାରେ ଅବସ୍ଥାନ କଲେ । ସେଠାରେ ସେମାନଙ୍କ ପରିବାରବର୍ଗ ଓ ବନ୍ଧୁବାନ୍ଧବଙ୍କର ମଧ୍ୟ ବସବାସର ବ୍ୟବସ୍ଥା କଲେ । ବରପ୍ରାପ୍ତ ହୋଇଥିବାରୁ ତିନିଭାଇ ହେଲେ ଅତ୍ୟନ୍ତ ଅହଂକାରୀ ଓ ପ୍ରଜାଙ୍କ ଉପରେ ଇଚ୍ଛା ମୁତାବକ ଅତ୍ୟାଚାର କରିବାରେ ଲାଗିଲେ ।

ପ୍ରଥମେ ପ୍ରଥମେ ମୁନିଋଷି ଓ ଦେବତାମାନେ ଚୁପ୍ ରହିଲେ । ସେମାନେ ମନେ ମନେ ଭାବିଲେ ଯେ ରାକ୍ଷସ ଭାଇମାନେ କିଛିଦିନ ନିଜ ଔଦ୍ଧତ୍ୟ ଦେଖାଇ ତା'ପରେ ଶାନ୍ତ ହୋଇଯିବେ । କିନ୍ତୁ ଦିନ ପରେ ଦିନ ବିତିଗଲା । ନିଜ ବ୍ୟବହାରରେ ଅନୁତପ୍ତ ହେବା ତ ଦୂରର କଥା, ରାକ୍ଷସମାନେ କ୍ଳାନ୍ତ ହେବାର କୌଣସି ଲକ୍ଷଣ ମଧ୍ୟ ଦେଖାଗଲା ନାହିଁ ।

ରାକ୍ଷସମାନଙ୍କ ଦ୍ୱାରା ପ୍ରପୀଡିତ ହୋଇ ଋଷିମୁନି ଓ ଦେବତାମାନେ ଭଗବାନ୍ ଶଙ୍କରଙ୍କ ପାଖରେ ପହଞ୍ଚି ନିବେଦନ କଲେ, "ହେ ଈଶ୍ୱର, ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ କରି ତିନିଭାଇଯାକ ଦେବତାଙ୍କ ଉପରେ ଅତ୍ୟାଚାର କରି ସ୍ୱର୍ଗରାଜ୍ୟ ଅଧିକାର କଲେ । ଋଷିମୁନିଙ୍କ ଉପରେ ମଧ୍ୟ ଅତ୍ୟାଚାର କଲେ । ସେମାନଙ୍କ ହାତରୁ ଆମକୁ ରକ୍ଷା କରନ୍ତୁ ।"

ମହେଶ୍ୱର ସୁକେଶଙ୍କୁ ଭଲ ପାଉଥିଲେ । ତେଣୁ ସେ କହିଲେ, "ଦେଖନ୍ତୁ, ଆପଣମାନେ



ଶ୍ରୀବିଷ୍ଣୁଙ୍କ ପାଖକୁ ଯାଆନ୍ତୁ । ସେହି ରାକ୍ଷସଗଣଙ୍କୁ ସଂହାର କରିବା ମୋ ପକ୍ଷେ ଅସମ୍ଭବ । ଶ୍ରୀବିଷ୍ଣୁ ଅବଶ୍ୟ ଆପଣମାନଙ୍କର ସହାୟତା କରିବେ ।"

ମୁନିଋଷି ଓ ଦେବଗଣ ମହେଶ୍ୱରଙ୍କର ଜୟଧ୍ୱନି କରି ତାଙ୍କଠାରୁ ବିଦାୟ ନେଇ ଶ୍ରୀବିଷ୍ଣୁଙ୍କ ପାଖକୁ ଗଲେ । ସେଠାରେ ପହଞ୍ଚି ସେମାନେ ଶ୍ରୀବିଷ୍ଣୁଙ୍କୁ କହିଲେ, "ଭଗବାନ୍, ତ୍ରିକୁଟ ପର୍ବତସ୍ଥିତ ଲଙ୍କାନଗରୀ ଏବେ ରାକ୍ଷସଙ୍କ ଦ୍ୱାରା ଅଧିକୃତ । ପୁଣି ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ କରି ସେମାନେ ଅତ୍ୟନ୍ତ ଉଦ୍ଧତ ଓ ଅହଂକାରୀ ହୋଇ ଋଷିମୁନି ଓ ଦେବତାମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି, କୃପାକରି ଆମକୁ ସେମାନଙ୍କ କବଳରୁ ରକ୍ଷା କରନ୍ତୁ । ଏ କାମ କେବଳ ଆପଣଙ୍କ ଦ୍ୱାରା ସମ୍ଭବ ।"

ସେତେବେଳକୁ ଶ୍ରୀବିଷ୍ଣୁଙ୍କ ପାଖରେ ବହୁ ଭକ୍ତଙ୍କର ଆକୁଳ କ୍ରନ୍ଦନ ଯାଇ ପହଞ୍ଚି ସାରିଥାଏ । ସେ ଦେବଗଣ ଓ ମୁନିଋଷିଙ୍କ ଅଭିଯୋଗ ଶୁଣି ଆଶ୍ଚର୍ଯ୍ୟ ହେଲେ ନାହିଁ । ସେ କ୍ଷଣକାଳ ନୀରବ ରହିଲେ । ତାଙ୍କ ମୁହଁରେ ସ୍ମିତ ହସ ଖେଳିଗଲା । ସେ ଦେବଗଣଙ୍କୁ ପଚାରିଲେ, "ମାତ୍ର ତିନିଜଣ ରାକ୍ଷସ ସମସ୍ତ ଦେବଙ୍କୁ ଏଭଳି ଭାବରେ ବିଚଳିତ କରି ପାରିଲେ କିପରି ? ଏହା ପଛରେ କି ରହସ୍ୟ ରହିଛି ?"

"ଭଗବାନ୍ ! ଆପଣ ଜାଣନ୍ତି, ସେ ରାକ୍ଷସମାନେ ବ୍ରହ୍ମାଙ୍କ ବରରେ ଗରୀୟାନ୍ । ବ୍ରହ୍ମାଙ୍କ ଆଶୀର୍ବାଦ ଯେଉଁମାନଙ୍କୁ ରକ୍ଷା କରୁଛି, ଆମେ ସେମାନଙ୍କୁ ମଧ୍ୟେ ମଧ୍ୟେ ବାଧା ଦେଇପାରିବା ସିନା, ସେମାନଙ୍କୁ ପୁରାପୁରି ଦମନ କରିବା ଆମ ପକ୍ଷରେ ସମ୍ଭବ ହେବ କିପରି ?" ଦେବଗଣ କହିଲେ ।

ଶ୍ରୀବିଷ୍ଣୁ ସେମାନଙ୍କୁ ଅଭୟଦାନ ଦେଇ କହିଲେ, "ସୁକେଶ ଓ ତା'ର ପୁତ୍ରମାନଙ୍କୁ ମୁଁ ଭଲ କରି ଜାଣେ । ମୁଁ ଅବଶ୍ୟ ସେମାନଙ୍କୁ ସଂହାର କରିବି । ଆପଣମାନେ ଅଦୌ ଚିନ୍ତା କରନ୍ତୁ ନାହିଁ ।"

ଶ୍ରୀବିଷ୍ଣୁଙ୍କର ଏହି ସାନ୍ତ୍ୱନାପୂର୍ଣ୍ଣ ବାକ୍ୟ ଶୁଣି ଦେବଗଣ ଓ ଋଷିଗଣ ଆନନ୍ଦିତ ହେଲେ ।

ଏ ସମସ୍ତ ସମାଚାର ବହୁତ ଶୀଘ୍ର ଲଙ୍କାରେ ଯାଇ ପହଞ୍ଚିଲା । ମାଲ୍ୟବନ୍ତ ତା'ର ସାନ ଭାଇମାନଙ୍କୁ କହିଲା, "ଶୁଣ, ଦେବତା ଓ ଋଷିମାନେ ମିଳିମିଶି ଆମର ସଂହାର କରିବା ପାଇଁ ଚେଷ୍ଟା କରୁଛନ୍ତି । ଶୁଣାଯାଏ ଯେ ସେମାନେ ପ୍ରଥମେ ଶିବଙ୍କୁ ଏଥିପାଇଁ ଅନୁରୋଧ କରିଥିଲେ କିନ୍ତୁ ଶିବ ତାଙ୍କର ଅସାମର୍ଥ୍ୟ ପ୍ରକାଶ କଲେ ଓ ବିଷ୍ଣୁଙ୍କ ପାଖକୁ ତାଙ୍କୁ ଯିବାକୁ କହିଲେ । ସେମାନେ ବିଷ୍ଣୁଙ୍କ ପାଖକୁ ଯିବାରୁ ବିଷ୍ଣୁ ଆମମାନଙ୍କୁ ବିନାଶ କରିବା ନିମନ୍ତେ ସ୍ୱୀକୃତ ହୋଇଛନ୍ତି । ବିଷ୍ଣୁଙ୍କ ଶକ୍ତି ସାମନାରେ ସମସ୍ତ ପ୍ରକାର ରାକ୍ଷସୀ ମାୟା ପଣ୍ଡ ହୋଇଛି । ହିରଣ୍ୟକଶିପୁ ପରି ରାକ୍ଷସ ମଧ୍ୟ ତିଷ୍ଠି ପାରିଲା ନାହିଁ । ତେଣୁ ଏ କ୍ଷେତ୍ରରେ ଆମେମାନେ କ'ଣ କରିବା ଉଚିତ୍ ଭାବିଚିନ୍ତି ଶୀଘ୍ର ଠିକ୍ କରିବା ।"



ବଡ଼ଭାଇ ମାଲ୍ୟବନ୍ତର କଥା ଶୁଣି ମାଲୀ ଓ ସୁମାଲୀ କହିଲେ, "ଆମେମାନେ ପଣ୍ଡିତ । ତପସ୍ୟା ଶକ୍ତି ମଧ୍ୟ ବହୁତ ଅଛି: ଧନସମ୍ପଦ ମଧ୍ୟ ଅମାପ, ଆଉ ସୈନ୍ୟସାମନ୍ତ ତ ଅସୀମ, ଆମେ ତିନିଭାଇ ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକ୍ରମ କେଉଁଥିରେ ବା କମ୍? ତେଣୁ ଦେବତାମାନଙ୍କର ଅହଂକାର ଭାଙ୍ଗିଦେବା ଭଲ । ସେମାନେ ବିଷ୍ଣୁଙ୍କ ସହାୟତାରେ ଆମ ଉପରେ ଆକ୍ରମଣ କରିବା ପୂର୍ବରୁ ଆମେ ସେମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେବା ସବୁଠୁ ଭଲ ହେବ ।"

ଏ ପ୍ରସ୍ତାବରେ ସମସ୍ତେ ଏକମତ ହେଲେ । ସଙ୍ଗେ ସଙ୍ଗେ ଦେବଗଣଙ୍କ ଉପରେ ଭୀଷଣ ଓ ଅଚାନକ ଆକ୍ରମଣ କରିବା ନିମନ୍ତେ ରାକ୍ଷସଗଣ ପ୍ରସ୍ତୁତ ହେଲେ । ପ୍ରବଳ ଉତ୍ସାହରେ ସେମାନେ ବାଛି ବାଛି ରାକ୍ଷସ ସୈନ୍ୟଙ୍କୁ ତାଲିମ୍ ଦେବାକୁ ଲାଗିଲେ । ନୂଆ ଯୁଦ୍ଧର ସଙ୍କେତ ପାଇ ରାକ୍ଷସମାନଙ୍କର ଆନନ୍ଦ କହିଲେ ନ ସରେ ।

ତା'ପରେ ତିନିଭାଇ ସୈନ୍ୟସାମନ୍ତ ଧରି ଯୁଦ୍ଧ ବେଶରେ ଦେବତାମାନଙ୍କୁ ଆକ୍ରମଣ କରିବାକୁ ଗଲେ । ସେମାନେ ମଧ୍ୟ ପ୍ରାୟ




ପ୍ରସ୍ତୁତ ଥିଲେ । ସ୍ୱୟଂ ବିଷ୍ଣୁ ଏସବୁ ଦେଖି ନିଜେ ଯୁଦ୍ଧ ବେଶରେ ସଜ୍ଜିତ ହୋଇ ଗରୁଡ଼ ଉପରେ ବସି ଯୁଦ୍ଧ ସ୍ଥଳକୁ ଆସିଲେ । ଘୋର ଯୁଦ୍ଧ ହେଲା । ସେନାପତି ଥିଲା ମାଳୀ । ଭୟଙ୍କର ରଡ଼କରି ମାଳୀ ନିଜ ସୈନ୍ୟମାନଙ୍କୁ ଉତ୍ସାହ ଦେବା ସଙ୍ଗେ ସଙ୍ଗେ ଅସ୍ତ୍ରଶସ୍ତ୍ର ପ୍ରବଳ ବେଗରେ ଚଳାଇବାକୁ ଲାଗିଲା । ତା' ଭୀଷଣ ରୂପ ଦେଖି ଦେବଗଣ ସନ୍ତ୍ରସ୍ତ ହେଲେ । କିନ୍ତୁ ବିଷ୍ଣୁଙ୍କର ସେଥିରେ ଭାବାନ୍ତର ହେଲା ନାହିଁ । ସେ ତା' ସମ୍ମୁଖକୁ ଆସି ତା' ଆଡ଼େ ଦୃଷ୍ଟିପାତ କଲେ ଓ ନିଜ ସୁଦର୍ଶନ ଚକ୍ର ପ୍ରେରଣ କଲେ । ପ୍ରଥମେ ସେହିଁ ବିଷ୍ଣୁଙ୍କ ଚକ୍ରରେ ପ୍ରାଣ ଦେଲା । ମାଳୀର ମୃତ୍ୟୁ ଦେଖି ଅନ୍ୟ ଦୁଇଭାଇ ସୈନ୍ୟସାମନ୍ତଙ୍କୁ ଧରି ରାଜଧାନୀକୁ ଫେରି ପଳାଇଗଲେ ।

ବିଷ୍ଣୁ ସେମାନଙ୍କୁ ଅନୁସରଣ କରି ଆକାଶରେ ଗରୁଡ଼ରେ ବସି ଯାଉଥା'ନ୍ତି । ମାଲ୍ୟବନ୍ତ ରାଗିକରି କହିଲା, "ଆପଣ କ୍ଷତ୍ରିୟଧର୍ମ ମାନୁ ନାହାନ୍ତି । ଯୁଦ୍ଧ କ୍ଷେତ୍ରର ବାହାରେ କାହିଁକି ଆପଣ ଆମକୁ ଆକ୍ରମଣ କରୁଛନ୍ତି ?"

ବିଷ୍ଣୁ ହସିଲେ । ସେଥିରେ କୁପିତ ହୋଇ ମାଲ୍ୟବନ୍ତ କହିଲା, "ମୋ ପ୍ରଶ୍ନର ଉତ୍ତର ଦେଉନାହାନ୍ତି କାହିଁକି ? ଆମ୍ଭେମାନେ ଯୁଦ୍ଧ କ୍ଷେତ୍ରରେ ଯଥାସାଧ୍ୟ ଯୁଦ୍ଧ କରିଛୁ । ବର୍ତ୍ତମାନ ଆପଣ ଆମ୍ଭମାନଙ୍କୁ ଅନୁସରଣ କରିବା ଉଚିତ ନୁହେଁ ।"

ବିଷ୍ଣୁ କହିଲେ, "ରାକ୍ଷସ ! ଉଚିତ ଅନୁଚିତ କଥା ସିନା ବର୍ତ୍ତମାନ ଉଠାଉଛ, ପୂର୍ବରୁ ସେ ବିଷୟ ପାଶୋରି ଦେଇଥିଲ କିପରି ? ନିର୍ଦ୍ଦୟ, ନିରସ୍ତ୍ର ଋଷିମାନଙ୍କ କୁଡ଼ିଆ ଉପରେ ଚଡ଼ାଉ କରି ସେମାନଙ୍କୁ କଲବଲ କରିବା ବେଳେ ଏ ବିବେକ ଜ୍ଞାନ କେଉଁଠି ଥିଲା ? ଜନପଦର ଅଧିବାସୀମାନଙ୍କୁ ହତ୍ୟା କରି, ଭୀତତ୍ରସ୍ତ କରି, ସେମାନଙ୍କ ଧନରତ୍ନ ଅପହରଣ କରିବା ବେଳେ ବିବେକବୋଧ କେଉଁଠି ଥିଲା ?"

ମାଲ୍ୟବନ୍ତ ରାଗିଯାଇ କହିଲା, "ଆମେ ବେଶ୍ କରିଛୁ । ତୁମେ କ'ଣ କହୁଛ ?"



ବିଷ୍ଣୁ କହିଲେ, "ଧାର୍ମିକ ଋଷିମାନଙ୍କୁ ଓ ଦେବତାମାନଙ୍କୁ ତମେମାନେ ବିନା କାରଣରେ ଆକ୍ରମଣ କରି ବହୁତ ଅତ୍ୟାଚାର କରିଛ । ତେଣୁ ତୁମମାନଙ୍କୁ ନିପାତ କରିବା ପାଇଁ ମୁଁ କଥା ଦେଇଛି । କେବଳ ଯୁଦ୍ଧକ୍ଷେତ୍ରରେ କ'ଣ ପୃଥିବୀ ଛାଡି ପାତାଳକୁ ଗଲେ ମଧ୍ୟ, ମୁଁ ତୁମକୁ ନିପାତ କରିବି ।"

ମାଲ୍ୟବନ୍ତ କହିଲା, "ଯଦି ନିଜକୁ ବୀର ବୋଲି ମନେ କରୁଛ, ତେବେ ଆସ ମୋ ସହିତ ଯୁଦ୍ଧ କରିବ ।"

ତା'ପରେ ଦୁହେଁ ଖୁବ୍ ଲଢ଼ିଲେ । ଇତିମଧ୍ୟରେ ସୁମାଳୀ ସେନାମାନଙ୍କୁ ନେଇ ପଳାଇଥାଏ । ବିଷ୍ଣୁଙ୍କ ଆୟୁଧ ଆଘାତ ସହ୍ୟ କରି ନପାରି ଦରମରା ଅବସ୍ଥାରେ ପ୍ରାଣ ନେଇ ମାଲ୍ୟବାନ୍ ମଧ୍ୟ ପଳାଇଗଲା । ସମସ୍ତେ ଲଙ୍କାରେ ପହଞ୍ଚିଲେ । ତଥାପି ବିଷ୍ଣୁ ଛାଡିଲେ ନାହିଁ । ସେଠାରୁ ମଧ୍ୟ ସେମାନଙ୍କୁ ତଡ଼ି ଦେଲେ । ରକ୍ଷମାନେ ସମସ୍ତେ ପ୍ରାଣ ଘେନି ପାତାଳକୁ ପଳାଇ ଯାଇ ସେଠାରେ ସୁମାଳୀକୁ ରାଜା କରି ରହିଲେ । ତା'ପରେ ଲଙ୍କାରେ ବିଶ୍ରବସୁଙ୍କ ପୁତ୍ର କୁବେର ପୁଣି ଫେରି ଆସି ରାଜ୍ୟ କରି ରହିଲେ ।

ଏହାପରେ ଧରିତ୍ରୀ ପୃଷ୍ଠରେ ଓ ସ୍ୱର୍ଗ ରାଜ୍ୟରେ ଶାନ୍ତି ଫେରି ଆସିଲା । ଦେବଗଣ ଓ ମୁନିଋଷିମାନେ ସ୍ୱସ୍ତିରେ ନିଃଶ୍ୱାସ ନେଲେ । ବହୁଦିନ ଧରି ପୃଥିବୀର ଲୋକେ ସନ୍ତ୍ରସ୍ତ ହୋଇ ରହିଥିଲେ । ଏଥର ପୁଣି ସ୍ୱଚ୍ଛନ୍ଦ ଜୀବନଯାତ୍ରା ଫେରି ଆସିଲା ।

ଏହିପରି କିଛିଦିନ ବିତିଗଲା । ଥରେ ସୁମାଳୀ ତାହାର ସୁନ୍ଦରୀ ଝିଅ କୈକେସୀକୁ ସାଙ୍ଗରେ ଧରି ପୃଥିବୀ ଭ୍ରମଣ କରୁଥିଲା । ବାଟରେ ଦେଖିଲା ଲଙ୍କା ନଗରୀରୁ ବାହାରି କୁବେର ପୁଷ୍ପକ ବିମାନରେ ବସି ପିତାମାତାଙ୍କୁ ଦେଖା କରିବାକୁ ଯାଉଛନ୍ତି । କୁବେରଙ୍କର ଏ ବୈଭବରେ ସେ ଈର୍ଷାନ୍ୱିତ ହେଲା । ତା'ପରେ ନିଜ ଝିଅକୁ କହିଲା, "ଝିଅ, ଦେଖ, ବିଶ୍ରବସୁ ଋଷିଙ୍କର ପୁତ୍ର ବୋଲି ସେ ମହା ଐଶ୍ୱର୍ଯ୍ୟପୂର୍ଣ୍ଣ ଜୀବନ ଯାପନ କରୁଛି । ତୁ ଏବେ ସୁନ୍ଦରୀ ଓ ଅନେକ ଯୁବକ ତୋତେ



ବିବାହ କରିବାକୁ ଚାହାନ୍ତି । ତୁ ଯଦି ରାକ୍ଷସ-କୁଳର ହିତ ଚାହୁଁ ତେବେ କୌଣସି ମତେ ବିଶ୍ରବସୁଙ୍କୁ ସେବା କରି ପୁତ୍ର କାମନା କରିବୁ । ତେବେ ଯାଇ ସେ ପୁତ୍ର ଅତ୍ୟନ୍ତ ଶକ୍ତିଶାଳୀ ହେବ ଓ ଆମର ପୂର୍ବ ସୌଭାଗ୍ୟ ଓ ଐଶ୍ୱର୍ଯ୍ୟ ପୁଣି ଫେରି ଆସିବ ।"

କୈକେଶୀ ପ୍ରଥମେ ସଙ୍କୋଚ ବୋଧ କଲା । କିନ୍ତୁ ସୁମାଳୀ ତାକୁ ବହୁତ କିଛି ବୁଝାଇଲା ।

କୈକେଶୀ ପିତାଙ୍କ କଥାକୁ ସ୍ୱୀକାର କଲା । ସେ ଯାଇ ବିଶ୍ରବସୁଙ୍କ ଆଶ୍ରମରେ ପହଞ୍ଚିଲା । ଋଷି ବିଶ୍ରବସୁ ପଚାରିଲେ, "ତୁମେ କିଏ ? ବୟସ କମ୍, ସୁନ୍ଦରୀ ପୁଣି ଏକାକୀ ଜନଶୂନ୍ୟ ଜଙ୍ଗଲରେ ଏଠାକୁ ଆସିବାର ଅଭିପ୍ରାୟ କ'ଣ ?"

ସୁନ୍ଦରୀ କୈକେଶୀ ବିନମ୍ର ଭାବରେ ଉତ୍ତର ଦେଲା, "ମୁନୀଶ୍ୱର ! ଆପଣ ନିଜର ତପଃଶକ୍ତି ଦ୍ୱାରା ସବୁ କିଛି ଜାଣି ପାରିବେ । ମୋ ପିତାଙ୍କ କଥା ଅନୁସାରେ ମୁଁ ଏଠାକୁ ଆସିଛି । ମୋ ନାମ କୈକେଶୀ । ମୁଁ ଆପଣଙ୍କ ସେବାରେ ନିଜକୁ ଉତ୍ସର୍ଗ କରିବି ।"

ଅଳ୍ପ ସମୟ ଆଖି ବୁଜି ଋଷି ସବୁ କିଛି ଜାଣିନେଲେ । ତା'ପରେ ସେ କହିଲେ, "ବୁଝିଲି । ତୁମେ ପୁତ୍ରକାମନା ନେଇ ଆସିଛ ! ଠିକ୍ ଅଛି । କିନ୍ତୁ ଯେଉଁ ମୁହୂର୍ତ୍ତରେ ତମେ ପୁତ୍ରକାମନା କରି ମୋ ପାଖକୁ ଆସିଛ ତାହା ରାକ୍ଷସ ମୁହୂର୍ତ୍ତ । ତୁମ ପେଟରୁ ଏକ ଭୟଙ୍କର କ୍ରୂର କିନ୍ତୁ ମହାବଳଶାଳୀ ପୁତ୍ର ଜନ୍ମହେବ ।"

"ଏ କିପରି କଥା ? ଆପଣଙ୍କ ପରି ପବିତ୍ର ଋଷିଙ୍କର ପୁତ୍ର ଏପରି କାହିଁକି ହେବ ? ମୋର ଦରକାର ଏକ ଉତ୍ତମ ସ୍ୱଭାବର ପୁତ୍ର ।" କୈକେଶୀ କହିଲେ । ବିଶ୍ରବସୁ କୈକେଶୀର କଥାରେ ସ୍ୱୀକୃତ ହେଲେ ।

କୈକେଶୀ ସେହିଠାରେ ରହିଲା ଓ ବିଶ୍ରବସୁଙ୍କ ସେବା କଲା । କୈକେଶୀ ଯେପରି ସୁନ୍ଦରୀ ଥିଲା, ସେହିପରି ଗୁଣବତୀ ଥିଲା । ତା'ର ଉପସ୍ଥିତି ଯୋଗୁଁ ଋଷିଙ୍କ ଆଶ୍ରମର ଶ୍ରୀ ବୃଦ୍ଧି ହେଲା । ଅନ୍ୟ ଋଷିମାନେ ମଧ୍ୟ ତାକୁ ସମ୍ମାନ କରୁଥିଲେ ।



ଅନେକ ଧନ ଧରି କୈକେସୀ ସେଠାରେ ବିଶ୍ରବମୁନିଙ୍କର ସ୍ତ୍ରୀ ହୋଇ ରହିଲା । କାଳକ୍ରମେ ତା'ର ତିନି ପୁତ୍ର ଓ ଗୋଟିଏ କନ୍ୟା ଜନ୍ମ ହେଲେ । ପ୍ରଥମ ପୁତ୍ର ରାବଣ ଦଶ ମୁଣ୍ଡ, କୋଡ଼ିଏ ହାତ ହୋଇ ବିକଟାଳ ରୂପ ନେଇ ଜନ୍ମ ହେଲା । ଦ୍ୱିତୀୟ କୁମ୍ଭକର୍ଣ୍ଣ ବିରାଟ ବପୁ, ଭୟଙ୍କର ରାକ୍ଷସ । ତୃତୀୟ କନ୍ୟା ସୂର୍ପଣଖା ଓ ଚତୁର୍ଥ ପୁତ୍ର ବିଭୀଷଣ ଯିଏ ଥିଲେ ସ୍ୱଭାବରେ ଅତ୍ୟନ୍ତ ସରଳ, ନମ୍ର, ବିନୟୀ, ଧୀର ଓ ବିଷ୍ଣୁଭକ୍ତ ।

ପିଲାମାନଙ୍କୁ ନେଇ କୈକେସୀ ବଣରେ ଘର ବନାଇ ରହିଥାଏ । ପିଲାଦିନରୁ ହିଁ ରାବଣ ଓ କୁମ୍ଭକର୍ଣ୍ଣ ମୁନିଋଷିମାନଙ୍କୁ ହଇରାଣ କରିବା ଓ ଅତ୍ୟାଚାର କରିବା କାମରେ ଲାଗିଲେ । କ୍ରମେ ବୟସ ବଢ଼ିଲା । ଦିନେ କୁବେରଙ୍କୁ ପୁଷ୍ପକବିମାନରେ ଯାଉଥିବାର ରାବଣକୁ କୈକେସୀ ଦେଖାଇ ଦେଇ କହିଲା, "ପୁଅ, ଦେଖ ତୋର ବୈମାତୃକ ଭାଇ କେତେ ଐଶ୍ୱର୍ଯ୍ୟ ନେଇ ଅଛି । ତୁ କ'ଣ ଏପରି ଐଶ୍ୱର୍ଯ୍ୟ ପ୍ରାପ୍ତ କରିପାରିବୁ ନାହିଁ ?"

ରାବଣ କହିଲା, "ଏ କ ଛାର ! ଏହାଠାରୁ ହଜାରଗୁଣ ଅଧିକ ଐଶ୍ୱର୍ଯ୍ୟ ମୁଁ ପ୍ରାପ୍ତ କରିବି । ସେଥିପାଇଁ ତପସ୍ୟା ଶକ୍ତି ଦରକାର । ପ୍ରଥମେ ମୁଁ ତପସ୍ୟା କରିବାକୁ ଯିବି ।"

ତା'ପରେ ରାବଣ ତା'ର ଦୁଇଭାଇଙ୍କୁ ଧରି ଗୋକର୍ଣ୍ଣ ପର୍ବତକୁ ଯାଇ ତପସ୍ୟା କଲା । ସେମାନେ ମଧ୍ୟ ତପସ୍ୟା କଲେ । ପ୍ରତ୍ୟେକ ହଜାର ବର୍ଷ ପରେ ସେ ନିଜର ଗୋଟିଏ ମୁଣ୍ଡ ଛିଣ୍ଡାଇ ଯଜ୍ଞରେ ଆହୁତି ଦେଉଥାଏ । ଏହିପରି ନ ହଜାର ବର୍ଷ କଟିଗଲା । ଶେଷ ହଜାର ବର୍ଷ କଟିବା ପରେ ନିଜେ ଯଜ୍ଞକୁଣ୍ଡକୁ ଡେଇଁ ପଡ଼ିବାକୁ ଯାଉଥିଲା, ଯେତେବେଳେ ବ୍ରହ୍ମା ଆବିର୍ଭାବ ହୋଇ ତାକୁ ବର ଯାଚିଲେ ।

ବ୍ରହ୍ମାଙ୍କୁ ସମ୍ମୁଖରେ ଦେଖି ରାବଣ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲା, "ପିତାମହ, ମୋତେ ଅମର ବର ଦିଅନ୍ତୁ ।"

ବ୍ରହ୍ମା କହିଲେ, "ବତ୍ସ ! ତାହା ତ ସମ୍ଭବ ନୁହେଁ । କୌଣସି ସର୍ତ୍ତ ରଖି ମାଗି ପାରୁ ।"

ରାବଣ କହିଲା, "ପ୍ରଭୁ, ଦେବତା, ରାକ୍ଷସ, ଯକ୍ଷ, ଗନ୍ଧର୍ବ, ନାଗ ପ୍ରଭୃତି ମୋତେ କେହି ଯେପରି ମାରିପାରିବେ ନାହିଁ ଏହି ବର ଦିଅନ୍ତୁ। ମନୁଷ୍ୟ ଓ ପଶୁ ତ ମୋର ଆହାର। ମୁଁ ସେମାନଙ୍କୁ ଭୟ କରେ ନାହିଁ।"

"ତଥାସ୍ତୁ!" କହି ବ୍ରହ୍ମା ବିଭୀଷଣ ନିକଟକୁ ଯାଇ ବର ଯାଚିଲେ।

ବିଭୀଷଣ କହିଲା, "ପ୍ରଭୁ, ମୋତେ ଏହି ବର ଦିଅନ୍ତୁ ଯେପରି ସର୍ବଦା ମୋର ମନ ଧର୍ମ ଓ ସତ୍ୟ ପଥରେ ରହିବ। ସର୍ବଦା ଭଗବାନଙ୍କର ସଚ୍ଚିଦାନନ୍ଦ ମଧ୍ୟରେ ମୁଁ ବୁଡ଼ି ରହିଥାଏ।"

"ତଥାସ୍ତୁ!" କହି ବ୍ରହ୍ମା ତାହାକୁହିଁ ଅମର ବର ଦେଲେ। ଶେଷରେ ସେ କୁମ୍ଭକର୍ଣ୍ଣ ପାଖକୁ ଗଲେ ବର ଦେବାକୁ। ସେତିକିବେଳେ ଦେବତାମାନେ ସମବେତ ହୋଇ ବ୍ରହ୍ମାଙ୍କୁ ସ୍ତୁତି କରିବାକୁ ଲାଗିଲେ। ସେମାନଙ୍କ ଏକାଗ୍ରତା ଓ ବ୍ୟାକୁଳତା ଯୋଗୁଁ ବ୍ରହ୍ମା ଅଟକି ଯାଇ ସେମାନଙ୍କ ଆଡ଼େ ଜିଜ୍ଞାସୁ ଦୃଷ୍ଟିରେ ଅନାଇଲେ। ସେତେବେଳେ ଦେବତାମାନେ କହିଲେ, "ତାକୁ ବେଶି ଶକ୍ତିଶାଳୀ କରିବା ପରି ବର ଦେବେନାହିଁ। ସେ ନନ୍ଦନବନରେ ପଶି ସାତଜଣ ଅପ୍ସରାଙ୍କୁ ଖାଇ ପକାଇଛି ଓ ଅନେକ ଋଷିମୁନି ଖାଇ ପକାଇଛି। ଦେବୀ ସରସ୍ୱତୀ ଯାଇ ତା'ର କଣ୍ଠରେ ବସନ୍ତୁ, ଯେପରି ତା'ର ବର ମାଗିବାରେ ଆମର କିଛି କ୍ଷତି ନ ହୁଏ।" ସେଇଆ ହେଲା।

କୁମ୍ଭକର୍ଣ୍ଣ କହିଲା, "ମୁଁ ଛ ମାସ ଶୋଇବି; ତା'ପରେ ନିଦରୁ ଉଠି ଖାଇବି। ଦିନେ ବୁଲିବୁଲି କରି ପୁଣି ଛ ମାସ ଶୋଇବି।"

"ତଥାସ୍ତୁ!" କହି ବ୍ରହ୍ମା ଅନ୍ତର୍ଦ୍ଧାନ ହେଲେ। ପରେ ମୋଟାବୁଦ୍ଧିଆ, କୁମ୍ଭକର୍ଣ୍ଣ ଉପଲବ୍ଧି କଲା ଦେବତାମାନେ ତା' ଉପରେ ପ୍ରଭାବ ପକାଇ ତାକୁ ଠକାଇଛନ୍ତି। ସେ ଅନେକ ପଶ୍ଚାତ୍ତାପ କଲା।

ତିନିଭାଇ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହୋଇ ସେମାନଙ୍କ ମା' ଓ ଭଉଣୀଙ୍କ ପାଖକୁ ଗଲେ



# ବର ନିର୍ବାଚନ

ଦେବଦତ୍ତ ଜଣେ ଧନୀବ୍ୟକ୍ତି; ତାଙ୍କର ଚନ୍ଦ୍ରକଳା ନାମରେ ଗୋଟିଏ ବୋଲି ଝିଅ ଥାଏ । ଝିଅଟି ସୁନ୍ଦରୀ ଓ ଗୁଣବତୀ । ତା' ପାଇଁ ବରପାତ୍ର ଖୋଜିବାକୁ ସେ ଗଲେ ।

ପରେ ଫେରିଆସି ସେ ଝିଅକୁ କହିଲେ, "ଦେଖ ଝିଅ ଚନ୍ଦ୍ରପୁର ଗ୍ରାମର ପିଲାଟି ଦେଖିବାକୁ ଭଲ, ଗୁଣ ମଧ୍ୟ ଭଲ । କିନ୍ତୁ ତା'ର ବନ୍ଧୁବାନ୍ଧବମାନେ କେହି ସେମିତି ଭଲ ଲୋକ ନୁହନ୍ତି । ଅବଶ୍ୟ ତା'ର ସାଙ୍ଗମାନେ ଖୁବ୍ ଭଲପିଲା । ଦ୍ୱିତୀୟ ରାମପୁରର ପିଲାଟି ଦେଖିବାକୁ ସୁନ୍ଦର ଓ ଗୁଣ ମଧ୍ୟ ଭଲ । ତା'ର ସବୁ ବନ୍ଧୁବାନ୍ଧବମାନେ ଧନୀ ଓ ନାମକରା ପରିବାର । ତେବେ ତା' ସାଙ୍ଗପିଲା ଗୁଡ଼ିକ ସବୁ ବାଜେ ମନେ ହେଲା । ଅତ୍ୟନ୍ତ ଉଚ୍ଛୃଙ୍ଖଳ । ଏବେ ତୁ କହ କେଉଁଠାରେ ପ୍ରସ୍ତାବ ପକାଇବା ।"

"ବାବା, ଆପଣ ଚନ୍ଦ୍ରପୁରରେହିଁ ସମ୍ବନ୍ଧ ପକାନ୍ତୁ ।" ଚନ୍ଦ୍ରକଳା ଉତ୍ତର ଦେଲା ।

"ଠିକ୍ ଅଛି । ତେବେ କାହିଁକି ତୁ ଏପରି କହିଲୁ ?" ଦେବଦତ୍ତ ପଚାରିଲେ ।

"ବାବା, ବନ୍ଧୁବାନ୍ଧବ ସବୁ ତ ନିଜର ଜନ୍ମ ଓ ପରିବାର ଯୋଗୁ ମିଳିଥାଏ । କିନ୍ତୁ ସାଙ୍ଗସାଥୀ ମିଳନ୍ତି ନିଜ ପସନ୍ଦ ଯୋଗୁ । ମିତ୍ରମଣ୍ଡଳୀଙ୍କ ସ୍ୱଭାବରୁ ମଣିଷର ରୁଚି, ଓ ବ୍ୟକ୍ତିତ୍ୱ ଜାଣିହୁଏ, କେଉଁ ପ୍ରକାର ଲୋକଙ୍କ ସହିତ ସାଥୀ ହେଲେ ସେ ଆନନ୍ଦ ପାଏ ତାହା ନିର୍ଭର କରେ ସେ କେଉଁ ପ୍ରକାରର ଲୋକ । ସେଥିପାଇଁ ମୁଁ ଚନ୍ଦ୍ରପୁର କଥା କହିଲି ।" ଚନ୍ଦ୍ରକଳା ହସି ହସି କହିଲା ।





# ମୂଲ୍ୟ

ମାଧବ ଥିଲା ହରିପୁରର ଏକ ଘୋଡ଼ା-ଗାଡ଼ିବାଲା । ସେ ନିକଟସ୍ଥ ସହରକୁ ଗାଡ଼ିରେ ଯାତ୍ରୀ ନେଇ ଯିବା ଆସିବା କରେ ଓ ସେଥିରେହିଁ ସେ ଜୀବିକା ନିର୍ବାହ କରେ । ଦିନେ ସହରରୁ ସେ ଫେରୁଛି । ଗାଡ଼ି ଖାଲି ଥାଏ । ହରିପୁରର ଜମିଦାର ବିଶ୍ୱବନ୍ଧୁ ରାସ୍ତାରେ ଏକେଲା ଠିଆ ହୋଇଥିଲେ । ଏ ଗାଡ଼ିଟି ଦେଖି ପଚାରିଲେ, "ମାଧବ, ତୁ ଗାଁକୁ ଫେରୁଛୁ ତ ? ଭଲ ହେଲା ମୁଁ ଗାଡ଼ି ଖୋଜୁଥିଲି । ବହୁତ ବେଳୁ ଖାଲି ଗାଡ଼ିଟିଏର ଅପେକ୍ଷା କରୁଥିଲି । ତୋର ଯଦି ଆଉ କେହି ଗ୍ରାହକ ନଥା'ନ୍ତି ତେବେ ମୁଁ ତୋର ଗାଡ଼ିରେହିଁ ଯିବି ।" ମାଧବ ହସି ହସି କହିଲା, "ଆସନ୍ତୁ ଆଜ୍ଞା, ମୋ ଗାଡ଼ି ଖାଲି ଯାଉଛି ଆପଣ ଆସିଲେ ତ ଆନନ୍ଦର କଥା ।" ଜମିଦାର ନଜର ଥଳୀ ଧରି ସେ ଗାଡ଼ି ଉପରେ ଯାଇ ବସିଲେ । ପୁଣି କହିଲେ, "ମୁଁ ଆଜି କରଜ ଅସୁଲ କରିବାକୁ ଆସିଥିଲି । ଟିକିଏ ଡେରି ହୋଇଗଲା ସେଥିପାଇଁ ଗାଡ଼ି ଖୋଜୁଥିଲି, ଦୈବଯୋଗକୁ ତୁ ମିଳିଗଲୁ । ଭଲ ହେଲା ।"

ଗାଡ଼ି କିଛି ବାଟ ଯିବା ପରେ ରାସ୍ତାକଡ଼ରେ ଠିଆ ହୋଇଥିଲା ଦୋକାନୀ ଚନ୍ଦୁଲାଲ । ସେ ଗାଡ଼ି ଅଟକାଇ କହିଲା, "ଭାଇ ମାଧବ, ମୁଁ ଜିନିଷ ସବୁ ମୋ ଦୋକାନ ପାଇଁ କିଣି ଅନେକ ବେଳୁ ଠିଆ ହୋଇଛି । ସଂଧ୍ୟା ହେବାକୁ ବସିଲାଣି, ଖାଲି ଗାଡ଼ିଟିଏ ଆଖିରେ ପଡୁନି । ଦୟାକରି ମୋତେ ତୋ ଗାଡ଼ିରେ ନେଇ ଯା' ।"

"ଆଚ୍ଛା, ଆସନ୍ତୁ ।" ମାଧବ କହିଲା ।

ଚନ୍ଦୁଲାଲ ତା'ର ଗୃହିଣୀ ବଡ଼ ବଡ଼ ଗଣ୍ଠିଲି ଧରି ଆସି ଘୋଡ଼ାଗାଡ଼ିରେ ବସିଲା ।

ପୁଣି କହୁବାଟ ଗାଡ଼ ଯିବା ପରେ ଦେଖାଗଲା ହରିପୁରର ଆଉ ଦୁଇଜଣ ବ୍ୟକ୍ତି ବଡ଼ ଅସହାୟ ଭାବରେ ରାସ୍ତା କଡ଼ରେ ଠିଆ ହୋଇଛନ୍ତି । ସନ୍ଧ୍ୟା ପ୍ରାୟ ହୋଇ ଆସିଲାଣି । ସେମାନେ ହେଲେ ସ୍କୁଲର ଶିକ୍ଷକ ବନବାବୁ ଓ ଅନ୍ୟଜଣକ ସେହି ଗାଁର ବାସିନ୍ଦା ଚାଷୀ ଭୋଲା । ସେମାନେ ନିର୍ନିମେଷ ନୟନରେ ଗାଡ଼ିଆଡ଼େ ଚାହିଁଲେ । ଚିହ୍ନିଲେ ତାଙ୍କର ଗାଁ ଗାଡ଼ି । କିନ୍ତୁ ଦୁଇଜଣ ତ ଆଗରୁ ବସି ସାରିଛନ୍ତି । ସ୍ଥାନ ପାଇବାର ଆଶା ପ୍ରାୟ ଛାଡ଼ି ଦେଇଥିଲେ । କିନ୍ତୁ ଜମିଦାରଙ୍କ ଇଙ୍ଗିତରେ ମାଧବ ସେମାନଙ୍କୁ ମଧ୍ୟ ଗାଡ଼ିରେ ସ୍ଥାନ ଦେଲା । ସେମାନେ ମଧ୍ୟ ଗାଡ଼ିରେ ବସିଲେ । ଗାଡ଼ି ଚାଲିଥିବା ବେଳେ ବନବାବୁ କହିଲେ ସେ ସହରକୁ ଯାଇଥିଲେ କୌଣସି ଏକ ସ୍ଥାନରେ କରଜ ଖୁଜିବା ପାଇଁ । ଭୋଲା ତା ର ଚାଷ ପାଇଁ ମଞ୍ଜି କିଣିବାକୁ ଯାଇଥିଲା । ଅଳ୍ପ କିଛି ଟଙ୍କା ଧାର କରି ମଞ୍ଜି କିଣି ଫେରୁଛି ।

ଗାଡ଼ିରେ ମାଧବ ବ୍ୟତୀତ ଚାରିଜଣ ବସିଥା'ନ୍ତି । ପ୍ରାୟ ସନ୍ଧ୍ୟା ବେଳକୁ ଗାଡ଼ି ହରିପୁରରେ ପହଞ୍ଚିଲା । ଚାରିଜଣଯାକ ନିଜ ନିଜର ଭଡ଼ା ଦେଇ ଚାଲିଗଲେ ।

ପରଦିନ ସକାଳୁ ମାଧବ ଗାଡ଼ି ସଫା କରିବାକୁ ଯାଇ ଦେଖିଲା ସେଥିରେ କେତେ-ଗୁଡ଼ିଏ ରୁପା ଟଙ୍କା ପଡ଼ି ରହିଛି । ସେ ଗଣି ଦେଖିଲା ପ୍ରାୟ ଅଶିଟି ରୁପା ଟଙ୍କା ଥିଲା । ସେ ଆଶ୍ଚର୍ଯ୍ୟ ହୋଇ ଭାବିଲା କାଲି ଯେଉଁମାନେ





ଗାଡ଼ିରେ ଥିଲେ ତାଙ୍କର ଭିତରୁ କାହାର ହୋଇଥିବ । ସେ ଯାଇ ଫେରାଇ ଦେବ । ମାଧବ ଥିଲା ଖୁବ୍ ସାଧୁ ସ୍ୱଭାବର । ସେ ଭାବିଲା ସମସ୍ତଙ୍କୁ ଯାଇ ପଚାରିଲେ ହୁଏତ କିଏ ମିଛରେ ମଧ୍ୟ ନିଜର ବୋଲି ଦାବୀ କରି ନେଇଯିବ । କ'ଣ କରିବ ଭାବୁ ଭାବୁ ଦିନଟିଏ ବିତିଗଲା ।

ପରଦିନ ମାଧବ ଟଙ୍କା ଗୁଡ଼ିକ ଗୋଟିଏ କନାରେ ବାନ୍ଧି ସିଧା ଯାଇ ଜମିଦାର ବିଶ୍ୱ-ବନ୍ଧୁଙ୍କ ଘରେ ପହଞ୍ଚିଲା । ଜମିଦାର ବାବୁ ବାହାର ପିଣ୍ଡାରେ ବସିଥିଲେ । ମାଧବ କହିଲା, "ବାବୁ, କାଲି ସକାଳେ ମୁଁ ଗାଡ଼ି ସଫା କରିବାକୁ ଯାଇ ଦେଖିଲି ଅନେକ ଗୁଡ଼ାଏ ରୂପା ଟଙ୍କା ସେଠାରେ ପଡ଼ିଛି । ଭାବିଲି ଆପଣଙ୍କର ହୋଇଥିବ ବୋଲି ନେଇ ଆସିଛି । ଦେଖି, ରଖନ୍ତୁ ।"

ବିଶ୍ୱବନ୍ଧୁ ଟଙ୍କା ପୁଟୁଳିକୁ ଛୁଇଁବା ପୂର୍ବରୁ ଘର ଭିତରକୁ ଦୌଡ଼ି ଗଲେ ଓ କିଛି ସମୟ ପରେ ଫେରି ଆସି କହିଲେ, "ମାଧବ, ପ୍ରକୃତରେ ସେ ଟଙ୍କା ମୋର, ସମୁଦାୟ ଅଶୀ ଟଙ୍କା ନା ?"

"ହଁ, ବାବୁ ଅଶିଟା ମୁଦ୍ରା ତ ଥିଲା ।" ମାଧବ କହିଲା ।

ବିଶ୍ୱବନ୍ଧୁ ମାଧବ ଦେଇଥିବା ପୁଟୁଳିକୁ ହାତରେ ଉଠାଇ ନେଇ କହିଲେ, "ପରଶି-ଦିନ ମୁଁ ତୋ ଗାଡ଼ିରେ ଆସିବା ବେଳେ ମୋର ଗୋଟାଏ ଟଙ୍କା ଥଳି ଥିଲା । ସେଥିରେ ଗୋଟାଏ କଣା ଥିଲା ବୋଲି ମୁଁ ଜାଣି ନଥିଲି ଏବେ ଦେଖିଲି । କିନ୍ତୁ ତୁ କିପରି ଜାଣିଲୁ ଟଙ୍କାଟା ମୋର ବୋଲି । ଅନ୍ୟ ତିନିଜଣ ଯାତ୍ରୀ ମଧ୍ୟ ଗାଡ଼ିରେ ଥିଲେ ।"

ମାଧବ ହସି ହସି କହିଲା, "ପ୍ରଥମେ କାଲି ସକାଳେ ଟଙ୍କା ସବୁ ଗାଡ଼ିରେ ପଡ଼ିଥିବାର ଦେଖି ଜାଣିଲି ତାହା ଆପଣ ଚାରିଜଣଙ୍କ ମଧ୍ୟରୁ ଜଣକର । ତା'ପରେ ଭାବିଲି ଏ ଟଙ୍କା କାହାର ହୋଇପାରେ । ଚନ୍ଦୁଲାଲ ଏତେ କଞ୍ଜୁସ୍ ଯେ ଟଙ୍କା ତା'ର ଜୀବନ; ସେ ପଇସା ଥଳିକୁ ଦୁଇହାତରେ ଜାବୁଡ଼ି ଧରି ଗାଡ଼ିରେ ବସିଥାଏ ତେଣୁ ତା' ହାତରୁ ଏ ପଇସା

ପଢ଼ିବା କଥା ନୁହେଁ । ତା' ଛଡ଼ା ମାଷ୍ଟର ମହାଶୟ ତ କରଜ ଶୁଝିବାକୁ ଯାଇଥିଲେ ପୁଣି କହିଲେ, ଟଙ୍କା ଯଥେଷ୍ଟ ନ ଥିବାରୁ ତାଙ୍କ ସାଙ୍ଗ ପାଖରୁ ଅଳ୍ପ ଧାର କରି କରଜ ଶୁଝିଲେ । ତେଣୁ ଟଙ୍କା ତ ତାଙ୍କର ହୋଇ ନ ପାରେ । ତା'ପରେ ରହିଲା ଚାଷୀ ହେଲା । ସେ ବିଚାରା ମଞ୍ଜି କିଣିବାକୁ କାଲି ଟଙ୍କା ନେଇ ଯାଇଥିଲା, ସେଥିରେ ମଞ୍ଜି କିଣି ଫେରୁଛି । ତା' ପାଖରେ ବା କୁଆଡୁ ଏତେଗୁଡ଼ାଏ ଟଙ୍କା ଆସିବ । ଯଦି ବା ସେମାନଙ୍କର ହୋଇଥା'ନ୍ତା ସେମାନେ ଦୌଡ଼ି ଦୌଡ଼ି ମୋ ପାଖକୁ ଆସନ୍ତେ ପଇସା ଖୋଜିବାକୁ । ତେଣୁ ଶେଷକୁ ବାକି ରହିଲେ ଆପଣ । ତେଣୁ ମନ ମଧ୍ୟରେ ମୁଁ ନିର୍ଣ୍ଣୟ କରିନେଲି କି ଏ ଟଙ୍କା ନିଶ୍ଚୟ ଆପଣଙ୍କର । ସେଥିପାଇଁ ସିଧା ଏଠାକୁ ଆସିଲି ।"

"ଆଚ୍ଛା । ତେବେ ତ ତୁ ଏ ବିଷୟରେ ଗମ୍ଭୀର ଭାବରେ ଚିନ୍ତା କରିଛୁ ଓ ଠିକ୍ ବିଚାର କରିଛୁ ।" ହସି ହସି କହିଲେ ବିଶ୍ୱବନ୍ଧୁ ।

ମାଧବ କହିଲା, "ମୋ ମନ ଭିତରେ ଯାହା ଟିକିଏ ଦୋଦୋପାଞ୍ଚ ଭାବ ଥିଲା, ଯେତେବେଳେ ଦେଖିଲି ଆପଣ, ଟଙ୍କା ଥଳୀକୁ ନ ଛୁଇଁ ଭିତରକୁ ଯାଇ ନିଜର ଟଙ୍କା ଥଳୀ ଦେଖି ଫେରି ଆସି ତେବେ ଯାଇ "ହଁ" ବୋଲି କହିଲେ ପୁଣି ଠିକ୍ ସଂଖ୍ୟା ମଧ୍ୟ ଅଶୀ ବୋଲି କହିଦେଲେ, ସେତେବେଳେ ମୁଁ ମୋ ନିର୍ଣ୍ଣୟ ବିଷୟରେ ନିଃସନ୍ଦେହ ହୋଇଗଲି ।" ମାଧବ ହସି ହସି କହିଲା ।

ମାଧବର ସାଧୁତା ଓ ବିଚାରବୁଦ୍ଧି ଦେଖି ଜମିଦାର ବିଶ୍ୱବନ୍ଧୁ ଖୁବ୍ ଖୁସି ହୋଇଗଲେ । ତା'ପରେ ସେ ଅଶୀ ଟଙ୍କାର ଥଳୀଟି ମାଧବ ହାତରେ ଦେଇ କହିଲେ, "ମାଧବ, ମୁଁ ଏହାକୁ ତତେ ଦେଉଛି, ତୁ ନାହିଁ କରନା । ସତରେ ମୁଁ ଖୁବ୍ ଖୁସି ହୋଇ ତତେ ଏହାକୁ ପୁରସ୍କାର ଦେଉଛି । ଏହା ତୋର ମହତଗୁଣର ଓ ବଡ଼ପଣର ଏକ ଛୋଟ ମୂଲ୍ୟ ମାତ୍ର ।"





## ଭାଗ୍ୟଦେବୀ ଓ ଦୁର୍ଭାଗ୍ୟଦେବୀ

ଗୋଟିଏ ଗ୍ରାମରେ ଫଜଲ ଓ ଅସଲ ନାମରେ ଦୁଇଟି ଭାଇ ଥା'ନ୍ତି । ବଡ଼ଭାଇ ଫଜଲ୍ ଭାଗ୍ୟବାନ୍ ଓ ଧନୀ ଥିଲା, କିନ୍ତୁ ସାନଭାଇ ଅସଲ ଥିଲା ଦରିଦ୍ର । ହେଲେ ମଧ୍ୟ ଥିଲା ସାଧୁ ସ୍ୱଭାବର ।

ଫଜଲର କ୍ଷେତରେ କାମ କରି ଅସଲ କୌଣସି ମତେ ପେଟ ପୋଷେ । ଦିନେ ଭାଇର କ୍ଷେତ ଜଗୁଥିବା ବେଳେ ସେ ଦେଖିଲା ଜଣେ ଶ୍ୱେତବସ୍ତ୍ର ପରିହିତା ମହିଳା ସେହି କ୍ଷେତ ଗୃହପାଖରେ ବୁଲୁଛନ୍ତି । ସେ ବାଲିଗୁଡ଼ିକ ଏକାଠି କରି ଗଛ ମୂଳରେ ଦେଉଛନ୍ତି ଓ ଗଛଗୁଡିକୁ ଛୁଇଁ ଛୁଇଁ ବୁଲୁଛନ୍ତି । ଅସଲ ବହୁତ ଆଶ୍ଚର୍ଯ୍ୟ ହେଲା । ସେହି ମହିଳା ତା'ର ନିକଟତର ହୁଅନ୍ତେ ସେ ପଚାରିଲା, "ତୁମେ କିଏ ? ଏଠି ଏପରି ଏକାଟିଆ ବା ବୁଲୁଛ କାହିଁକି ?"

"ମୁଁ ତୋ ବଡ଼ଭାଇର ଭାଗ୍ୟଦେବୀ । ତଳେ ଖସି ପଡ଼ିଥିବା ମାଟିସବୁକୁ ମୁଁ ଗଛମୂଳକୁ ଦେଉଛି ।"

"ତେବେ ମୋର ଭାଗ୍ୟଦେବୀ କାହାନ୍ତି ?" ଅସଲ ପଚାରିଲା ।

"ତୋର ଭାଗ୍ୟଦେବୀ ? ହେଇଟି ସେଇ ଦୂରରେ ଥିବା ଦକ୍ଷିଣ ପାହାଡ଼ର ପଛରେ ଅଛନ୍ତି ।" ଏତିକି କହି ସେ ଅଦୃଶ୍ୟ ହୋଇଗଲେ ।

ଅସଲ ଘରକୁ ଗଲା । କିଛି ଖାଦ୍ୟ ଜିନିଷ ଓ ବ୍ୟବହାର୍ଯ୍ୟ ଜିନିଷ ସବୁ ଏକାଠି ବାନ୍ଧି ନିଜର ଭାଗ୍ୟଦେବୀଙ୍କ ଅନ୍ୱେଷଣରେ ବାହାରି ପଡ଼ିଲା । ତା' ଚୁଲି ପଛପଟରୁ କାହୁଁ ଗୋଟିଏ ଥୁରୁ ଥୁରୁ ବୁଢ଼ୀ ଉଠି ଆସି କାନ୍ଦି କାନ୍ଦି କହିଲା, "ମୋତେ ଛାଡ଼ି କୁଆଡ଼େ ଯାଉଛୁ ? ମୋତେ ସାଙ୍ଗରେ ନେଇ ଚାଲ୍ ।"

ଅସଲ ବୁଢ଼ୀର ବିକୃତ ମୁହଁ ଓ ଲଦ୍‌ଖୋର ଭାବ ଦେଖି ଅନେକ ବୁଝାଇଲା । ତଥାପି ମଧ୍ୟ ବୁଢ଼ୀ ଜିଦ୍ ଧରିଲା ଯିବା ପାଇଁ । ଅସଲ କହିଲା, "ଏତେ ଦୂର ବୋହିନେବା କଷ୍ଟ ହେବ । ତେଣୁ ତୁ ଯଦି ଏଇ ଛୋଟ ବୋତଲରେ ପଶିଯିବୁ ତେବେ ମୁଁ ଅନ୍ୟ ଜିନିଷ ସହିତ ତୋତେ ବୋହିନେବି ।" ବୁଢ଼ୀ ସେଥିରେ ରାଜି ହେଲା ଓ ଛୋଟ ରୂପ ଧରି ବୋତଲରେ ପଶିଗଲା । ଅସଲ ସେ ବୋତଲର ମୁହଁ ବନ୍ଦ କରିଦେଲା ଓ ତାକୁ ନେଇ ରାସ୍ତାରେ ଯିବାବେଳେ ଗୋଟାଏ ପୋଖରୀ ପାଖ କାଦୁଅରେ ପୋତି ଦେଇ ଚାଲିଗଲା ।




ଅସଲ ଦକ୍ଷିଣପଟ ପାହାଡ଼କୁ ଲକ୍ଷ୍ୟ ରଖି ଚାଲିଲା । ଚାଲି ଚାଲି ଯାଇ ଶେଷରେ ସେହି ପାହାଡ଼ ଅତିକ୍ରମ କରିଯାଇ ଏକ ଛୋଟ ସହରରେ ପହଞ୍ଚିଲା । ସେଠାରେ ଜଣେ ଧନୀ ବ୍ୟକ୍ତିଙ୍କ ସହିତ ତା'ର ଦେଖା ହେଲା । ସେ ତାକୁ ଚାକିରି ରଖିଲେ ।

ଧନୀବ୍ୟକ୍ତି ଅସଲକୁ କହିଲେ, "ଦେଖ, ମୁଁ ନିଜ ପାଇଁ ଭୂଇଁ ତଳେ ଗୋଟିଏ ଘର ତିଆରି କରିବି । ସେଥିପାଇଁ ମୂଳଦୁଆ ପକାଇବାକୁ ହେବ ଓ ବହୁତ ଗଭୀର ପର୍ଯ୍ୟନ୍ତ ମାଟି ଖୋଳିବାକୁ ହେବ । ତୁମେ ସେ ଖୋଳିବା କାମ କରିବ । ଖୋଳୁ ଖୋଳୁ ଯଦି କିଛି ଧନ ତୁମକୁ ମିଳିବ ତେବେ ତାହା ତମର ।"

ଅସଲ ଖୁସି ହୋଇ ଖୋଳିଲା । ଖୋଳୁ ଖୋଳୁ ତାକୁ କିଛି ସୁନା ମିଳିଲା । ଯଦିଓ ଧନୀବ୍ୟକ୍ତି ତାକୁ କହିଥିଲେ ଯେ ତାକୁ ଯାହା ମିଳିବ ସବୁ ତା'ର, ତଥାପି ସେ ସେଥିରୁ ଅଧେ ମାଲିକକୁ ଦେଇ ଅଧେ ନିଜେ ରଖିଲା । ପୁଣି ସେ ମାଟି ଖୋଳିବାକୁ ଲାଗିଲା । ଖୋଳୁ ଖୋଳୁ ବହୁତ ଗଭୀରକୁ ଯିବା ପରେ ସେ ଅନେକ ଧନରତ୍ନ ପାଇଲା । ତା'ପରେ ସେ ଦେଖିଲା ସେଠାରେ ଗୋଟିଏ ସିନ୍ଦୁକ ଅଛି । କିଛି ଶବ୍ଦ ସିନ୍ଦୁକରୁ ଆସୁଥିବାର ସେ ଶୁଣିପାରିଲା । ସେ ଭଲ କରି କାନ ଡେରି ଶୁଣିଲା ଯେ ସିନ୍ଦୁକ ଭିତରୁ କିଏ କହୁଛି, "ସିନ୍ଦୁକ ଖୋଲ ।" ଅସଲ ତତ୍‌କ୍ଷଣାତ୍

ସିନ୍ଦୁକ ଖୋଲିଦେଲା ଏବଂ ତା' ଭିତରୁ ଜଣେ ଦେବୀ ବାହାରି ଆସିଲେ । ସେ ମଧ୍ୟ ଶ୍ୱେତବସ୍ତ୍ର ଧାରଣ କରିଥିଲେ । ଅସଲ ପଚାରିଲା, "ତୁମେ କିଏ ?"

"ମୁଁ ତୁମର ଭାଗ୍ୟଦେବୀ । ତମେ ମୋତେ ଆଜିଯାଏ ଖୋଜୁଥିଲ ନା ? ମୁଁ ତମକୁ ଛାଡ଼ି ଆଉ କୁଆଡ଼େ ଯିବି ନାହିଁ ।" ଏକଥା କହି ଭାଗ୍ୟଦେବୀ କୁଆଡ଼େ ଅଦୃଶ୍ୟ ହୋଇଗଲେ ।

ଜମି ଭିତରୁ ଯେଉଁ ଧନରତ୍ନ ମିଳିଥିଲା ସେସବୁ ଅସଲ ନେଇ ତା'ର ମୁନିବକୁ ଅଧେ ଦେଲା ଓ ବାକି ଅଧିକ ନେଇ ନିଜ ଗ୍ରାମକୁ ଚାଲିଗଲା । ସେ ଅଳ୍ପଦିନ ଭିତରେ କୋଟିପତି ହୋଇଗଲା ଓ ଗ୍ରାମରେ ସୁନ୍ଦର ଘରବାଡ଼ି କରି ଖୁସିରେ ରହିଲା । କିନ୍ତୁ ସଦା ସର୍ବଦା ଗରିବ ଅସହାୟ ଲୋକଙ୍କୁ ବହୁତ ଦାନ ଦେଉଥାଏ ।

ଦିନେ ରାସ୍ତାରେ ଯାଉ ଯାଉ ସେ ତା'ର ଭାଇ ଫଜଲକୁ ଦେଖିଲା । ତାକୁ ଘରକୁ ଡାକି ନେଇ ବହୁତ ଆଦର ଅଭ୍ୟର୍ଥନା କଲା ଓ ସ୍ତ୍ରୀ ପିଲାଙ୍କ ପାଇଁ ଅନେକ ଉପହାର ଦେଇ ବିଦାୟ ଦେଲା । କିନ୍ତୁ ଏସବୁ ଦେଖି ଫଜଲର ମନ ଇର୍ଷ୍ୟାରେ ବିଦୀର୍ଣ୍ଣ ହୋଇଯାଉଥିଲା । ଅସଲଠାରୁ ସେ ସମସ୍ତ ବୃତ୍ତାନ୍ତ ଶୁଣିଥିଲା । ତେଣୁ ସେ ଭାବିଲା କାହୁଁଅରୁ ବୋତଲଟି ବାହାରକରି ଦରିଦ୍ରତାର ଦେବୀଙ୍କୁ ପୁଣି ଅସଲ ଘରକୁ ଫେରାଇ ଆଣିବ ।

ସେଇଆ କଲା । କିନ୍ତୁ ବୋତଲ ଫିଟିବା ମାତ୍ରେ ଦରିଦ୍ରତାର ଦେବୀ ଫଜଲକୁ କହିଲା, "ଧନ୍ୟବାଦ, ତୁ ମୋର ବହୁତ ଉପକାର କଲୁ । ଏବେ ତତେ ଛାଡ଼ି ମୁଁ କୁଆଡ଼େ ଯିବି ନାହିଁ ।" ଏତକି କହି ସେ ଯାଇ ତା'ର କାନ୍ଧରେ ସବାର ହୋଇ ବସିଲା । ତା' ପରେ ତା'ର ଉପହାର ଗୁଡ଼ିକ ଚୋରମାନେ ନେଇଗଲେ । ଘରେ ଆସି ଶୁଣିଲା ଯେ ତା'ର ଘରବାଡ଼ି ଗାଈଗୋରୁ ସବୁ ପୋଡ଼ି ଯାଇଛନ୍ତି । ପୁଣି କିଛିଦିନ ପରେ ଜମିବାଡି ମଧ୍ୟ ବନ୍ୟାରେ ଭାସିଗଲା । ସେ ହୋଇଗଲା ନିଃସ୍ୱ





# ରଘୁର ରସିଦ

ଜମୀରସାହି ଗାଁରେ ରଘୁଦାସର ଘର । ସେ ଅତ୍ୟନ୍ତ ପରିଶ୍ରମୀ । ତା'ର ଦୁଇ ଗୁଣ୍ଠଖଣ୍ଡି କ୍ଷେତବାଡ଼ି ଥାଏ । ସେଥିରେ ସେ ନାନା ପ୍ରକାର ଶାକ୍ ସବ୍ଜୀ ଉପୁଜାଏ । ସେ ତା' ଫସଲର ଏପରି ଯତ୍ନ ନିଏ ସତେ ଅବା ସେସବୁ ଅମୂଲ୍ୟ ରତ୍ନ ।

ବାସ୍ତବରେ ମଧ୍ୟ ସେସବୁ ରତ୍ନ ଭଳି ଥିଲେ । ତା' ଜମିର ପନିପରିବା ଉପରେ ସମସ୍ତଙ୍କ ଆଖି । ସେଠାରୁ ତିନିକୋଶ ଦୂରରେ ବଜାର । ରଘୁଦାସକୁ ତା' ପରିବା ବୋଝ ଧରି ହାଟକୁ ଯିବାକୁ ପଡ଼େ ନାହିଁ । ବେପାରୀମାନେ ଆସି ଉଚିତ ମୂଲ୍ୟ ଦେଇ ତା'ଠୁଁ ସବୁ କିଣି ନେଇ ଯାଆନ୍ତି ।

ରଘୁଦାସ ଉପରେ ଗାଁ ଲୋକେ ଖୁସିଥାନ୍ତି । ସେ କେବେ କାହାରି ପ୍ରତି କୌଣସି ଅନ୍ୟାୟ କରେ ନାହିଁ । ସମସ୍ତଙ୍କ ସହ ଭଲ ବ୍ୟବହାର କରେ । ସମସ୍ତେ ତେଣୁ ତା' ପ୍ରତି ସଦୟ ନହେବେ ବା କାହିଁକି ?

ଯେତେବେଳେ ଗାଁରେ କୌଣସି ଲୋକ ଘରେ ପର୍ବପର୍ବାଣି ବା ଭୋଜି ଭାତ ହୁଏ, ରଘୁଦାସ ସେତେବେଳେ ବେପାରୀଙ୍କୁ ନ ଦେଇ ନିଜ ବାଡ଼ିର ପନିପରିବା ସୁଲଭ ମୂଲ୍ୟରେ ସେ ଲୋକକୁ ଯୋଗାଇ ଦିଏ ।

କିନ୍ତୁ ଜଣେ ଲୋକ ତାକୁ ସହି ପାରେ ନାହିଁ । ସେ ତା' ପଡ଼ୋଶୀ ବୀରେନ୍ଦ୍ର । ବୀରେନ୍ଦ୍ର ମଧ୍ୟ ପନିପରିବା ଚାଷ କରେ । କିନ୍ତୁ ତା' ଜମିରେ ଏଡ଼େ ଭଲ ଫସଲ ଉଠୁନାହିଁ । ଅସଲ କାରଣ ହେଲା, ସେ ରଘୁଦାସ ଭଳି ସେମିତି ପରିଶ୍ରମୀ ନୁହେଁ । ରଘୁଦାସ ତୁଳନାରେ ବୀରେନ୍ଦ୍ରର ଜମିବାଡ଼ି ଅନେକ ବେଶି ।

ଲୋକେ ବୀରେନ୍ଦ୍ରକୁ କହନ୍ତି, "କହୋ, ତମର ଏତେ ଜମି ଥାଇ ତମେ ଯାହା କରି

ନ ପାଉଛ, ରଘୁଦାସ ତାହାଠୁଁ ବହୁତ ଅଧିକ କରି ପାଉଛି !" ଏଭଳି ମନ୍ତବ୍ୟ ଶୁଣି ବୀରେନ୍ଦ୍ର, ଭାରି ଖପା ହୁଏ । କିନ୍ତୁ ସତକଥା ଉପରେ ବା ସେ କ'ଣ କହିବ ?

ବର୍ଷେ ରଘୁଦାସର ବାଡ଼ିରେ ଅତି ସୁନ୍ଦର ଭାବରେ କଖାରୁମାନ ଫଳିଥାନ୍ତି । ସେମାନେ ଆକାରରେ ଯେପରି ବଡ଼ ବଡ଼ ହୋଇଥାନ୍ତି, ରଙ୍ଗରେ ମଧ୍ୟ ସେହିପରି ଚହଟ ଚିକ୍କଣ ହୋଇଥାନ୍ତି ।

ରଘୁଦାସର ଆଖି ଆଗରେ ସେମାନେ ବଢୁଥାନ୍ତି । ରଘୁଦାସ ସେମାନଙ୍କର ନାମକରଣ କରିଥାଏ । କାହାର ନାମ ଐରାବତ ତ କାହା ନାମ ଭୀମ । ପୁଣି ଆଉ ଗୋଟାଏ କଖାରୁର ନାମ ଗୁଣ୍ଡା ; ଅନ୍ୟ ଗୋଟିକର ନାମ ବାଘ । ଏହିପରି ଭାବରେ ସର୍ବମୋଟ ଗୁଳଣଟିଯାକ କଖାରୁର ନାମକରଣ ସେ କରିଥାଏ ।

କଖାରୁମାନେ ପାକଳ ଅବସ୍ଥାରେ ପହଞ୍ଚିଲେ । ରଘୁଦାସ ସେଦିନ ସଞ୍ଜବେଳେ ସେମାନଙ୍କ ଆଡ଼କୁ ସଜଳ ଆଖିରେ ଅନାଇଲା । କାରଣ ସକାଳେ ସେମାନଙ୍କୁ ଗାଡ଼ିରେ ଥୋଇ ସେ ବଜାରକୁ ଯିବ । ଏଥର କୌଣସି ବେପାରୀକୁ ସମୁଦାୟ ନଦେଇ ସେ ନିଜେ ଗୋଟା ଗୋଟା କରି ବିକ୍ରି କରିବ ।

ସକାଳେ ସେ ଗାଡ଼ି ସଜ କରି ନିଜ ବାଡ଼ିକୁ ଆସିଲା । ଯାହା ଦେଖିଲା, ସେଥିରେ ତା' ଆଖି ଖୋସି ହୋଇଗଲା । ଗୋଟାଏ ବି କଖାରୁ ନାହିଁ । ରାତିରେ କିଏ ସବୁଯାକ ତୋଳି ନେଇ ଯାଇଛି !



ସେ ମୁଣ୍ଡରେ ହାତଦେଇ ବସି ପଡ଼ିଲା । କ୍ରମେ ସେ ଉତ୍ତେଜିତ ହେଲା । ଚାଳିଶଟିଯାକ କଖାରୁ ଜଣେ ନେଇଯାଇ ନିଜ ଘରେ ରଖିବ ନାହିଁ; ନିଶ୍ଚୟ ବିକି ଦେବ । ବଜାରକୁ ନନେଇ ଚୋର ଏତେଗୁଡ଼ାଏ ଫଳ କେଉଁଠି ବା ବିକିବ ?

ସେ ସଙ୍ଗେ ସଙ୍ଗେ ବଜାର ଆଡ଼େ ଚାଲିଲା । ଗୋଟାଏ ପରେ ଗୋଟାଏ ପରିବା ଦୋକାନ ଉପରେ ଆଖି ପକାଇ ଯାଉଁ ଯାଉଁ ସେ ଠାଏଁ ଅଟକିଗଲା ।

"ହେଇଟି ମୋ ଐରାବତ, ମୋ ଭୀମ, ମୋ ବାଘ..." ସେ ଚିତ୍କାର କଲା ।

"ଏମିତି ପାଗଳଙ୍କ ଭଳି କ'ଣ କହୁଛ ?" ଦୋକାନୀ ପଚାରିଲା ।

"କ'ଣ କହିଲ, ମୁଁ ପାଗଳ ? ତମେ ମୋ ଜିନିଷ ଚୋରି କରି ବିକୁଛ, ତମେ ଭଲ ଆଉ ମୁଁ ପାଗଳ ?" ରଘୁଦାସ ପାଟିକରି କହିଲା ।

ଲୋକେ ଜମିଗଲେ । ଦୈବକୁ ସେଠି ଥିଲେ ରାଜାଙ୍କ ଦେଓ୍ୱାନ୍ । ରଘୁଦାସ ତାଙ୍କ ପାଖରେ ଅଭିଯୋଗ କଲା । ଦେଓ୍ୱାନ୍ ପଚାରିବାରୁ ଦୋକାନୀ କହିଲା ଯେ ସେ ମାତ୍ର ଘଣ୍ଟାଏ ଆଗରୁ କଖାରୁତକ ଜମୀରସାହିର ବୀରେନ୍ଦ୍ର ଠାରୁ କିଣିଛି । ବୀରେନ୍ଦ୍ର ସେଯାଏ ବଜାରରେ ଅଛି ବୋଲି କେହି ଜଣେ କହିବାରୁ ଦେଓ୍ୱାନ୍ ତାକୁ ଡକାଇ ଆଣିଲେ ।

ବୀରେନ୍ଦ୍ର ଆସି ଯୋର୍ ଗଳାରେ ଘୋଷଣା କଲା କି କଖାରୁତକ ସେ ନିଜ ବାଡ଼ିରୁ



ଆଣିଛୁ! ଦଓ୍ୱାନ ରଘୁଦାସକୁ କହିଲେ, "ଏ କଖାରୁ ତମର ବୋଲି ପ୍ରମାଣ କ'ଣ?"

"ହଜୁର, ଇଏ ପରା ମୋର ଐରାବତ, ଯିଏ ହେଲା ଭୀମ, ଆର ଗୋଟିକ ହେଲା···"

ରଘୁଦାସର କଥା ଶୁଣି ସମସ୍ତେ ହସିଲେ । ଦଓ୍ୱାନ୍ କହିଲେ, "ରଘୁ! ତମେ ଖାଲି କଖାରୁର ନାମ କହିଦେଲେ ତ ସେସବୁ ତମର ବୋଲି ପ୍ରମାଣ ହୋଇଯିବ ନାହିଁ! ଆଉ କିଛି ପ୍ରମାଣ ଅଛି?"

ହଠାତ୍ ରଘୁଦାସ ମୁହଁ ଉଜ୍ଜ୍ୱଳ ଦିଶିଲା । ସେ କହିଲା, "ଅଛି ହଜୁର, ଅଛି । ମୋଠି ରସିଦ୍ ଅଛି । ମୁଁ ଆଣି ଦେଉଛି!"

ଦଓ୍ୱାନ୍ ତାକୁ ରସିଦ୍ ଆଣିବାକୁ କହିଲେ । ଜଣେ ପରିଚିତ ଲୋକର ଘୋଡ଼ା ନେଇ ସେ ନିଜ ଘରକୁ ଗଲା ଓ ଗୋଟିଏ ପୁଟୁଳି ଧରି ଫେରି ଆସିଲା ।

"ଏଇ ମୋର ରସିଦ । ଯେମିତି ରସିଦ କାଗଜର ଫାଳେ ରସିଦ ଦେବାଲୋକର ପାଖରେ ରହିଥାଏ, ଏସବୁ ମୋଠି ଥିଲା ।" ଏହା କହି ରଘୁଦାସ ପୁଟୁଳିରୁ ଚାଳିଶଟି ଦଣ୍ଡା ବାହାର କଲା । କଖାରୁ ଚୋରି ଛିଡ଼ାଇ ଆଣିବା ପରେ କଖାରୁର ଦଣ୍ଡାଟିମାନ କଖାରୁ ଲଟାରେ ରହିଥିଲେ । ବର୍ତ୍ତମାନ ରଘୁଦାସ ସେହିଗୁଡ଼ିକ ନେଇ ଆସିଥିଲା । ଚାହିଁ ଚାହିଁ ସେ ପ୍ରତି କଖାରୁ ଦେହରେ ତା' ଦଣ୍ଡା ଲଗାଇ ଦେଲା । ଠିକ୍ ଠିକ୍ ସବୁ ଖାପ ଖାଇଗଲା ।

ଦଓ୍ୱାନ୍ ବୀରେନ୍ଦ୍ର ଆଡ଼େ କଟମଟ କରି ଅନାଇ କହିଲେ, "ତୁ ବନ୍ଦୀ ହୋଇ ରାଜାଙ୍କ ପାଖକୁ ଚାଲ ।"

ବୀରେନ୍ଦ୍ର ତାଙ୍କ ଗୋଡ଼ତଳେ ପଡ଼ିବା ସଙ୍ଗେ ସଙ୍ଗେ ରଘୁଦାସର ଗୋଡ଼ତଳେ ପଡ଼ି କ୍ଷମା ପ୍ରାର୍ଥନା ମାଗିଲା । ଦଓ୍ୱାନ୍ ତାକୁ ରଘୁଦାସକୁ ଯଥେଷ୍ଟ କ୍ଷତିପୂରଣ ଦେବାକୁ ହୁକୁମ ଦେବା ସଙ୍ଗେ ସଙ୍ଗେ ଜୋରିମାନା ମଧ୍ୟ କଲେ ।






## ଜଙ୍ଗଲ ମୂଷା

ଜଙ୍ଗଲ ମୂଷାମାନେ ଗୋଟିଏ ରାତିରେ ପ୍ରାୟ ଷାଠିଏ ଗଜ ଲମ୍ବର ସୁଡ଼ଙ୍ଗ ଖୋଳି ପାରନ୍ତି ।



## ଫୁଲଫଳ ଜଗତ

ସାରା ପୃଥିବୀରେ ମାତ୍ର ଗୋଟିଏ ପ୍ରକାର ଫୁଲ ଅଛି ଯାହା ଥରେ ଫୁଟିବା ପାଇଁ ଦୀର୍ଘ ସମୟ ନିଏ । ତାହା ବଲିଭିଆ ରାଜ୍ୟରେ ଅଛି । ଆଠଫୁଟ ଗୈଁଡ଼ା ଓ ପଇଁତିରିଶ ଫୁଟ ଉଚ୍ଚ ଏହି ଗଛରେ ଦେଢ଼ଶହ ବର୍ଷରେ ଥରେ ଫୁଲ ଧରେ ।



ଉଡନ୍ତା ସାପ

# ସକାଳ ଆରମ୍ଭ ହେଉ ସୁଖେ, ଟଟ୍‌କା ସୁଆଦ ନେ

ପିପରମେଣ୍ଟ ଓ ସ୍ପିୟାରମେଣ୍ଟର ଟଟକା ଆମୋଦ । ବିଶେଷ ଫର୍ମୁଲର ଦ୍ରୁତ ଖେଳାଉ ହୋଇ ଯାଉଥିବା ଫେଣରେ ଦାନ୍ତ ଝଲମଲ ପରିଷ୍କାର, ନିଶ୍ୱାସରେ ସ୍ନିଗ୍ଧ ସୁଗନ୍ଧ ।

ନୂଆ ପଣ୍ଡସ ଟୁଥପେଷ୍ଟ ଦ୍ୱାରା ଦାନ୍ତ ମାଜିଲେ ଟିକେ ହେଲେ ବିରକ୍ତି ଲାଗେ ନାହିଁ, ସେଥିପାଇଁ ଭାରି ମଜା ।

ଦେଖିବେ ଘରର ପିଲାମାନେ ମଧ୍ୟ ଏହି ଟୁଥପେଷ୍ଟରେ ଦାନ୍ତ ମାଜିବାକୁ ଖୁବ୍ ଭଲ ପାଇବେ ।

ଆଜିହିଁ ନୂଆ ପଣ୍ଡସ ଟୁଥପେଷ୍ଟ କିଣନ୍ତୁ ।

ଜୀବନର ପ୍ରତିଟି
ସକାଳକୁ
କରନ୍ତୁ ସୁନ୍ଦର,
ସାର୍ଥକ ।






